# ଉତ୍କଳ-ସାରସ୍ୱତ-ପ୍ରତିଭା

ଶ୍ରୀମତୀ ବିଦ୍ୟୁତ୍ ପ୍ରଭା ଦେବୀ

ପ୍ରକାଶିକା

ଶ୍ରୀମତୀ ବିଦ୍ୟୁତ୍ ପ୍ରଭା ଦେବୀ

ଅଗରପଡ଼ା, ଭଦ୍ରକ

ମୂଲ୍ୟ ୪୦୍

ଆ୦ଅଗ୍ରା [illegible]

# ସୂଚୀକା

ପୃଷ୍ଠା

## ଶୂଦ୍ର ମୁନି ସାରଳା ଦାସ

ବାଣୀ-ବରପୁତ୍ର ସାଧକ ତପି !
ଯେ ମଧୁର ଭାବ ଗଲ ବରଷି
ପୁରାଣ-ପ୍ରସିଦ୍ଧ ଉତ୍କଳ-କାନେ
ପାଷାଣ ତରଲା ସେ ମଧୁ ଗାନେ
    ରଚି 'ମହାଭାରତ'
ପାପପଙ୍କିଳ ଏ   ଉତ୍କଳ-ସାଗରେ
    ଭସାଇଲ ଧର୍ମପୋତ ।

ତୁମ ତତ୍ତ୍ୱବାଣୀ ଶ୍ରବଣେ ବାଜି
ଜଡ଼ ଦେହେ ପ୍ରାଣ ଫଟରେ ଅଜ ।
ସୁନ୍ଦର ସରଳ ମୋହନ ଛନ୍ଦେ
ଭରତଠେ ଚିତ୍ତ ନବ ଆନନ୍ଦେ
    ଶୁଣି ତବ ଧର୍ମଗ୍ରନ୍ଥ
ଶ୍ରବଣ ସାର୍ଥକ   କରଇ ନାସ୍ତିକ
    କିବା ଅଜ୍ଞ ବିଜ୍ଞ ସନ୍ଥ ।

ଧରମ-ଚେତନା ଉଡ଼ାଇ ତୁମେ
ପୁରାଣ-ପ୍ରସିଦ୍ଧ ଉତ୍କଳଭୂମେ
ପ୍ରତି ସ୍ମୃତି ତଳେ ରହିଲ ଜାଗି
ରଚି ଏଥୁ ମୂଢ଼ ମାନବ ଲଗି
ସୁମଧୁର ପଦାବଳୀ
ହୃଦ-ସାଗରର ପାଣ୍ଡିତ୍ୟ ଗଭୀର
କେ ପାରଇ ତୁମ କଳି ?

ଅସାମାନ୍ୟ ତୁମ ପ୍ରତିଭା ବଳେ
ପ୍ରକଟାଇ ଗଲ ଭାବର ଛଳେ
କି ମଧୁ ସୁବୋଧ୍ୟ ସରଳ ଭାଷା
ଗାଇବ ତା କାଳେ କାଳେ ଓଡ଼ିଶା
କରିଗଲ ଯାହା ଦାନ
ଧନ୍ୟ କବି ତୁମ କଳ୍ପନାବିଳାସ
ଅବର ବିଷୟଜ୍ଞାନ ।

ଉତ୍କଳ-ଜାତିକୁ ପ୍ରେରଣା ତବ
ଜାଗ୍ରତ ଉଦ୍‌ବୁଦ୍ଧ କରୁ ହେ ଦେବ !
ଅଦ୍ଭୁତ କରଣୀ ତବ ମନାସି
ଅଚିରେ ଜାଗନ୍ତୁ ଏ ଦେଶବାସୀ
ତବ ଯଶୋଗାନ କରି
ତବ ପୁଣ୍ୟ କୀର୍ତ୍ତି ଖେଳିଯାଉ ଦେଶେ
ନନ୍ଦନ-ସୁବାସ ପରି ।

## ବଳରାମ ଦାସ

କିଏ କହେ ମରିଅଛନ୍ତି ବଳରାମ ଦାସ
ଯା କୀର୍ତ୍ତିଗାନେ ମୁଖର ଉଠଇ ଏ ଦେଶ
ସେ କି କେବେ ମୃତ୍ୟୁପାଖେ ହାରିପାରେ ପ୍ରାଣ
ରଚିଲା ଯେ ସୁବିରାଟ ପୁଣ୍ୟ 'ରାମାୟଣ' ?

ଓଡ଼ିଆଜାତିର ଧର୍ମ-ଜୀବନ-ବଲ୍ଲରୀ
ପଲ୍ଲବିତ ଲଗି ତୁମ ଗ୍ରନ୍ଥ-ତତ୍ତ୍ୱ-ବାରି
ତୁମରି ରଚନାବଳୀମଧ୍ୟେ ତପୋଧନ !
ବଞ୍ଚିଅଛନ୍ତି ଉତ୍କଳର ଭାଷା ଚିରଦିନ ।

ଯେ ଅମୂଲ୍ୟ ରତ୍ନରାଜି କଲ ତୁମେ ଦାନ
ଭୁଲି ତା ପାରିବ କାହୁଁ ଉତ୍କଳ-ସନ୍ତାନ ?
ସୁବୋଧ ଭାଷାରେ ଧର୍ମ ଜଟିଳ ସମସ୍ୟା
କି ଶକତି ବଳେ ରଚିଗଲ ମହାଯଶା !

ପୁନରପି ତୁମ ସମ କଠୋର ସାଧକ
ମଣ୍ଡି ନାହିଁ କେହି ଦେଶଜନନୀର ଅଙ୍କ
କା ମୁଖକମଳୁଁ ପୁଣ୍ୟ ଗୀତା ମଧୁରସ
ତବ ତିରୋଧାନେ ଶୁଣି ନାହିଁ ଏହି ଦେଶ ।

କେହି ବାଳ-ବୃଦ୍ଧ-ଯୁବା ଭକ୍ତ ମନ କିଣି—
ନେଇ ପାରି ନାହିଁ କବି ତୁମକୁ ହେ ଜିଣି
ଯାବତ ଯାଇନି ଲୋପ ଉତ୍କଳର ନାମ
ତାବତ ବଞ୍ଚିବ ତୁମେ ଭକ୍ତ ବଳରାମ ।

# ଭକ୍ତକବି ଜଗନ୍ନାଥ ଦାସ

ଉତ୍କଳର ବ୍ୟାସକବି ଭକ୍ତ ଜଗନ୍ନାଥ !
ପ୍ରଚାରିଲ ଲୋକମୁଖେ ଯେଉଁ ଭାଗବତ
ପୁରାଣୁ ଉଦ୍ଧାରି ନାନା ଗୂଢ଼ ଉପାଖ୍ୟାନ
ଦେଶର ସଙ୍ଗୀତ ତାହା ଜାତିର ସମ୍ମାନ ।

ଦୁଷ୍ପଥ ଚଳନ୍ତୁଁ ଯେହୁ କରାଏ ନିବୃତ୍ତ
କ୍ଳାନ୍ତ ଅବସରେ ପ୍ରାଣେ ଢାଳି ଦିବ୍ୟ ଶାନ୍ତି
ଯେ ମଧୁର ଦୋହାବଳୀ କରି ଆତ୍ମହରା
ବୁହାଏ ନାସ୍ତିକ ହୃଦେ ବିଭୁ-ପ୍ରେମଧାରା—

ଯେ ଅଧ୍ୟାତ୍ମୁଁ କରି ପାନ ତତ୍ତ୍ୱ-ପଞ୍ଚାମୃତ
ଲଭନ୍ତି ସ୍ୱର୍ଗୀୟ ମୋଦ ଧାର୍ମିକ ଭକତ
ସେହି ନୀତିବାଣୀ ଶିଶୁ ଗାଏ ଚଟଶାଳେ
ପଞ୍ଚାୟତେ ବୃଦ୍ଧ ପୁଣି ଚଷା ହଳମାଳେ ।

ସୁରମ୍ୟ ପ୍ରାସାଦେ କିବା ନିରନ୍ନ କୁଟିରେ
'ଭଣେ ବିପ୍ର ଜଗନ୍ନାଥ' ଉଠେ ସମସ୍ୱରେ
କରନ୍ତି ଦରିଦ୍ର ଧନୀ ଚଣ୍ଡାଳ ବ୍ରାହ୍ମଣ
ବିପଦେ ସମ୍ପଦେ ତବ ମହିମା କୀର୍ତ୍ତନ ।

ଧର୍ମ-ମାନଦଣ୍ଡ ଯେବେ ହୋଇଚି ରକ୍ଷିତ
ନିହିତ ତା ମୂଳେ ତବ ପୁଣ୍ୟ ଭାଗବତ
ଭାରତ-କୋଣାର୍କ-ଶୀର୍ଷେ ହୋଇ ସମାସୀନ
ଏ ଜାତଠୁଁ ପୂଜା ପାଉଅଛ୍ଛ ଚିରଦିନ ।

ସୁଲଳିତ ଛନ୍ଦେ ଛନ୍ଦେ ଭାଷା-ମଧୁରତା
ପ୍ରଚ୍ଛନ୍ନେ ରହିଛି ମିଶି ଦୁଗ୍ଧେ ଶାଚ ଯଥା
କର୍ଣ୍ଣ-ରନ୍ଧ୍ରେ ସ୍ୱାଦ ଯାର କରି ଆସ୍ୱାଦନ
ଅପୂର୍ବ ଉଲ୍ଲାସ ଲଭଥାନ୍ତି ସନ୍ଥଜନ ।

ଅଦ୍ଭୁତ ସାଧନ ବଳେ ବେଦ-ସିନ୍ଧୁ ମନ୍ଥି
ବାଢ଼ି ଏକ ସୁବିଶାଳ ଅମୃତ ବିଭୂତି
ଜାତ ହାତେ ହେ ଦ୍ୱିତୀୟ ବ୍ୟାସ-ତପୋଧନ !
ପ୍ରତ୍ୟକ୍ଷରେ ମର ଦେହେ ଜିଣିଛ ଶମନ ।

## କବିସମ୍ରାଟ୍ ଉପେନ୍ଦ୍ର

ଶୁଣିଅଛେଣେ ଇନ୍ଦି ହେ କବିସମ୍ରାଟ
ସାହିତ୍ୟରାଜ୍ୟକୁ ଦେଖାଇଲ ବାଟ ।
ତବ କବିତାର ରସମୟ ଛନ୍ଦ
ଯୋଗୀର ଜୀବିକା ଭୋଗୀର ଆନନ୍ଦ ।
ରସିକକୁଳର ହୃଦୟ-ମଣ୍ଡନ
ପଣ୍ଡିତମଣ୍ଡଳୀ ଜୀବର ଜୀବନ ।
ତୁମ ଛନ୍ଦ ଗୃହୁ ବିଳାସ ଶୟନେ
ପ୍ରିୟ ଛବି ଆଙ୍କେ ପ୍ରେୟସୀନୟନେ ।
ଛତରୀ ବଟର ଛାଇ ତଳେ ବସି
ଗୋପ ବେଣୁ ସେହି ଛନ୍ଦେ ଉଠେ ରସି ।
ଉଲ୍ଲସାଇ ସୁନାରଙ୍ଗ ସଞ୍ଜିହୁଆ
ସେଇ ଛନ୍ଦ ଗାଇ ବାହୁଡ଼େ ହଳିଆ
ପାହାନ୍ତ ପବନେ ମିଠା ଗଳା ଝାଡ଼ି
ଶଗଡ଼ିଆ ସେହି ଗୀତ ଧଏ ଛାଡ଼ି ।
ବାହା ପାଲି ଦଳେ ଭଣ୍ଡି ବୀର ନାଆଁ
ମୁଖରିତ ଆଜି କରେ ପଲ୍ଲୀ ଗାଆଁ ।

ବିଳାସ ତ୍ୟାଗର ନିଦର୍ଶନ ତୁମେ
ରାଜପରିବାରେ ଏ ଭାରତଭୂମେ
ତେଜି ସୁବିଶାଳ ରାଜ୍ୟ ରାଜଛତ୍ର
ବାଣୀପଦେ ଯେଣୁ ଢାଳିଦେଲ ମତ ।

ଜଗିଥିଲେ ତୁମେ ଥାଉ ସୀଇଙ୍କର
ରକ୍ଷିଥାନ୍ତା କିଏଁ କେ ତୁମ ଖବର ?
ବିରାଟ ହେ ତବ କାବ୍ୟ ଅଭିଯାନ
'ଘୁମୁସର' ଅଣା କଲି ଯା ବର୍ଣ୍ଣନ ।
ମୁକୁଟ ପିପାସା ଥିଲେ ତବ ହୃଦେ
ଗୋଦାବରୀ ଠାରୁ ବିଷ୍ଣୁ ଚନ୍ଦ୍ର ଯାଏ
ଅଙ୍କି ଏ ମହାନ କୀର୍ତ୍ତି-ଇତିହାସ
କାଳ-ବକ୍ଷେ ଲଭି ନ ଥାନ୍ତା ବିକାଶ ।
ନିରେଖୁ ନ ଥାନ୍ତେ ଦେବୀ ବାଗୀଶ୍ୱରୀ
ରସାର୍ଣ୍ଣବ 'କୋଟି-ବ୍ରହ୍ମାଣ୍ଡ-ସୁନ୍ଦରୀ' ।

ବଳିଷ୍ଠ ଲେଖନୀଧାରେ ବରକବି
'ବୈଦେହୀଶେ' ଭରିଲେ ଯେଉଁ ଛବି
ବାଣୀର ଅମୋଘ ଶୁଭାଶିଷ ବଳେ
ଦିନୁ ଦିନ ତାର ଦିବ୍ୟ ଜ୍ୟୋତି ଝଲେ ।

## କବିସୂର୍ଯ୍ୟ ବଳଦେବ

ରସର ଜାହ୍ନବୀସ୍ରୋତେ
ଦିବ୍ୟଭାବ-କାଳିନ୍ଦୀ ସଙ୍ଗମ
ସମ୍ଭବ କରିଛ କବି !
ପଦେ ତବ ନମୋ ନମୋ ନମଃ ।

ଅପରୂପ ଛନ୍ଦ ତୁମେ
ଦେଲ ଯେଉଁ ଓଡ଼ିଆ ସଙ୍ଗୀତେ
ଅମୃତ ଢାଳିଚି ସେହୁ
ଯୁଗ ଯୁଗ ଶ୍ରବଣ ଓ ଚିତ୍ତେ ।

ଷଡ ଚନ୍ଦ୍ରା ଚଉଁରୁ ସ୍ୱର
ମୂର୍ଚ୍ଛନା ତା ମୋହନ ଆବେଶେ
ମାନସ ଭସାଇ ନିଏ
ପ୍ରେମପ୍ଲୁତ ଅତୀନ୍ଦ୍ରିୟ ଦେଶେ ।

'ଚମ୍ପୂ'ର ଜଗତେ ତୁମେ
ବୁହାଇଛ ଯେ ତ୍ରିବେଣୀଧାର
ଉଲ୍ଲାସେ ପ୍ଲାବିତ ସେହୁ
କାବ୍ୟମୟ ଏ ଉତ୍କଳ ସାର ।

ବନ୍ଧୁର ପ୍ରଣୟ ପଥେ
କଣ୍ଟକିତ ପ୍ରେମ-ରାଜ୍ୟବନେ
କରିଚି ସ୍ୱର୍ଗୀୟ କେବା
ନିଷ୍ଠାବଳେ ତୁମ ପରି ଜଣେ ?

ଅନାବିଳ ପ୍ରଣୟର
ମହନୀୟ ଗୂଢ଼ ତଥ୍ୟରାଶି
ଅଚିନ୍ତ୍ୟ କଳ୍ପନା କାର
ତୁମ ସମ ପାରନ୍ତି ପ୍ରକାଶି ?

ପ୍ରେମର ମୌକ୍ତିକ-ହାସେ
ଝଲସାଇ ରସ-ରତ୍ନାକର
ଭାସ୍ୱର ରହୁଛ ଚିର
କାବ୍ୟ-ନଭେ ହେ କବି-ଭାସ୍କର !

## ଅଭିମନ୍ୟୁ ସାମନ୍ତସିଂହାର

ଭାରତୀ-ଉଦ୍ୟାନ— ବିହାର-ରସିକ
ମଧୁହାସ୍ୟ ମଧୁଲିଟ !
ତୁମ ଦାନେ ଆଜ ଗୁରୁ ଗୌରବତ
ଉତ୍କଳ-ଶାରଦା-ପୀଠ ।
ଭାଷାର ବିରାଟ ତୁଙ୍ଗ କୋଣାର୍କ
ଭାବର ଅଗାଧ ଖଣି
ସ୍ୱର୍ଗୀୟ ଲଳିତ ପ୍ରେମ-ସମ୍ବଳିତ
'ବିଦଗ୍ଧଚିନ୍ତାମଣି' ।
ଏକ ସୂତ୍ରେ ଯଥା ଗ୍ରଥିତ ବିଶୁଦ୍ଧ
ସ୍ୱର୍ଣ୍ଣ ସଙ୍ଗେ ଭ୍ର ମୋତ
ଭାଷା-ଅଙ୍ଗେ ତଥା ଭାବଟି ତୁମର
ଫୁଟାଇଚ ଦବ୍ୟ ଜ୍ୟୋତ ।
ଭଞ୍ଜ, କବିସୂର୍ଯ୍ୟ, ଗୋପାଳକୃଷ୍ଣଙ୍କ
ଅଳଙ୍କାର, ପଦ, ଭାବ
ତ୍ରିବେଣୀ-ସଙ୍ଗମ ସମ ଏକାଧାରେ
ଲଭିଅଛି ତହୁଁ ଠାବ ।
ବନ୍ଦେ ପଦ ତବ ସାମନ୍ତସିଂହାର
ଭକତ-ଅରଘ ଢାଳି
ଶାରଦା-ମନ୍ଦରେ ରତନ-ପ୍ରଦୀପ
କି ଲଗନେ ଗଲ ଜାଳି ।
ତେଜି ନରଦେହ • ରହିଛ ସଜୀବ
କୋଟି କବିପ୍ରାଣତଳେ
ତୁମରି ମୂର୍ଚ୍ଛନା ତୁମରି ଉଚ୍ଛ୍ୱାସ
ଅରୂପ ଇଙ୍ଗିତ ଢାଳେ ।

## କବି ଦୀନକୃଷ୍ଣ

ବରେଣ୍ୟ ଭକତ ତୁମେ ଦୀନକୃଷ୍ଣ ଦାସ
କଳ୍ପନା-କୁସୁମ ଭରା ବାଣୀ-ଉପବନେ
ଧନ୍ୟ ତବ ପ୍ରତିଭାର ମଳୟ ଉଲ୍ଲାସ
ଖେଳାଇଲା ବସନ୍ତ ଯା କାବ୍ୟ-କୁଞ୍ଜବନେ ।

କି ମହା ଶକତିବଳେ କି ଦିବ୍ୟ ନୟନେ
ନିରେଖିଲ ସ୍ୱପ୍ନସ୍ୱର୍ଗ ବ୍ରଜଭୂମି କବି !
ନିରେଖିଲ ଯମୁନାର ନୀର-ଦରପଣେ
ନୀପକୁଞ୍ଜ-ଦୋଳାୟିତ ବଂଶୀଧାରୀ ଛବି ।

କି ସୁଯୋଗେ ଶୁଣି କବି ! ବିମୁଗ ସପନେ
ନିଖିଳହୃଦୟୈର କାନ୍ତ ବେଣୁ-ବାଣୀ
ପ୍ରକାଶିଲ ରସମୟ ଲଳିତ ରଚନେ
ଶ୍ରୀକୃଷ୍ଣ-ପ୍ରଣୟ-ଲୀଳା-ସ୍ୱର୍ଗୀୟକାହାଣୀ ।

ସୁଷମାର ଚଳଚ୍ଚିତ୍ର ତବ କାବ୍ୟ-ବନ
ନୟନ କରାଏ ଦିବ୍ୟ ଛବି ରେଖାପାତ
ଝୁରୁଥିବା କାଳିନ୍ଦୀର ମୃଦୁଳ ଦୋଳନ
ଗୋବର୍ଦ୍ଧନ-ଚୂଡ଼ା ଅସ୍ତ-ପାଟଳିମା-ସ୍ନାତ ।

ଅବା କାହ୍ନୁ ଶ୍ୟାମାଙ୍ଗେ ବିସ୍ତୀର୍ଣ୍ଣ ପ୍ରାନ୍ତରେ
ତୃଣାଙ୍କୁର-ଭକ୍ଷରତ ଧେନୁ ଅଗଣିତ
ଧନ୍ୟ ଶିଳ୍ପୀ ! ଅଙ୍କିଗଲ କି ଅମୃତ କରେ
ବିସ୍ମୟେ ଭରଇ ଯାହା ବିଶ୍ୱଜନଚିତ୍ତ ।

ସୁଦକ୍ଷ ତୂଳୀରେ ରଚି ଯେଉଁ ଯୁଗ୍ମ-ରାସ
ବିରଚିଲ ରସକାବ୍ୟ ସୁଭଗ ସୁନ୍ଦର
ଛନ୍ଦେ ଛନ୍ଦେ ସେ ମଧୁର ତରଳ ଉଚ୍ଛ୍ୱାସ
କୋଟି ପ୍ରାଣେ ଉଚ୍ଛୁଳଏ ଆନନ୍ଦ-ନିର୍ଝର ।

ଯେ ଶୋଭା-ସମ୍ପଦ ତାଳ ବିଭୁକୃପାବଳେ
ଯୁଗ-କଣ୍ଠେ ଜନାଇଲ ଶ୍ରୀକୃଷ୍ଣମହିମା
ଲଙ୍ଘିଛି ଯେସନେ ତାହା ଦୁର୍ଲ୍ଲଭ କୌଶଳେ
କାବ୍ୟ-ତାଜମହଲର ପଟାନ୍ତର ସୀମା ।

'ରସକଲ୍ଲୋଳ'ରେ କବି ବିଶ୍ୱ-ହୃଦ ଜୟ
ଦେଲ ଯାହା ହେ ସାଧକ କର୍ମୀ ନିରଳସ !
ତା ମଧ୍ୟେ ଜୀବନ ତବ ରହିଛି ଅକ୍ଷୟ
କାବ୍ୟ ଯେ ନୁହଇ ତାହା ଖାଲି ଦିବ୍ୟରସ ।

# ପ୍ରକୃତ କବି ରାଧାନାଥ

କବିକୁଳଗୁରୁ ଅହେ ରାଧାନାଥ
ସାହିତ୍ୟ-ଗଗନ-ରବି !
ତୁମ ଯୋଗେ ଧନା ରୂପାୟିତ ହେଲା
ଉତ୍କଳପ୍ରକୃତି-ଛବି ।

କି ଶୁଭ ଲଗନେ ଜନମି ଏ ଭୂମେ
ବିନାୟକ ଅବତାର !
କାଳର ନିକଷେ ଟାଣିଗଲ ଗୃହୁ
କବିତା-କାଞ୍ଚନ-ଗାର ।

ତଟିନୀ କେଦାରେ ଶଇଳ କାନନେ
ପଡ଼େ ଯେଉଁ ହାସ ଝର
ଚିନ୍ତା ବନେ ଯେତେ ଲେଖନୀରୁ ତବ
ସ୍ରବିଲ ପୀୟୂଷ ସର ।

କି ମୁଗ୍ଧ ନୟନ ନିବେଶି ଉତ୍କଳ-
ପ୍ରକୃତି-ଆଲେଖ୍ୟ ପରେ
ଜୀବନ ବିଳାସ ବିକାଶିଲ ତାର
ନିପୁଣ ଲେଖନୀ ଧାରେ ।

ଯେଉଁ ବନତୋଷା ହ୍ରଦ ନଦୀ ପଠା
ଜଡ଼ ସମ ଥିଲେ ଶୋଇ
ତୁମ ତୂଳୀମୁନେ ହସିଲେ ଯେସନେ
ନବ ପ୍ରାତେ ମୁଖ ଧୋଇ ।

ପଞ୍ଚ ସ୍ୱଇଙ୍ଗର ପ୍ରାସାଦ କଳ୍ପନା
ଲେଖନୀ-କୁହୁକ ବଳେ
ନିଖିଳ-ନୟନେ ଦେଖାଇଲ କବି
ସୁନୀଳ ଚନ୍ଦ୍ରିକା-ଛଳେ ।
ଯା ବକ୍ଷ-ସୁଷମା ଝୁରୁଥିଲ ସଦା
ବନ୍ଧ୍ୟା ଝରଫୁଲ ପରି
ବାଜି ତୁମ କର ପ୍ରସବନ୍ତି ଫଳ
ଶାଶ୍ବତ ବାସନା ଧରି !
ଯୁଗ ଯୁଗ ଲଗି ଅହେ କାବ୍ୟଯୋଗୀ !
ଏକାମ୍ରକାନନକୁଞ୍ଜେ
ଅଙ୍କିଲ ଯେ ପୁଣ୍ୟ ପ୍ରଣୟର ଛବି
ପ୍ରଣୟୀହିଁ ତାହା ବୁଝେ ।
ନାୟିକାର ପଦେ ନାୟକ କେସନେ
ଦେଉଛନ୍ତି ନିଜରେ ବଳି
କାବ୍ୟ-ନଭପଟେ ଅଲେଖ୍ୟଟି ତାର
ଝଟକେ ଚନ୍ଦ୍ରମା ଭଳି ।
ତୁଚ୍ଛ ଅୟସରେ ସୁନା କରିବାର
ପରଶପଥର ଧରି
ତୁମ ପକ୍ଷେ ଏକା ସମ୍ଭବନ୍ତି କବି
ପ୍ରକୃତବରପଜାସି !

## ବ୍ୟାସକବି ଫକୀର ମୋହନ

ଉପନ୍ୟାସ ଜନ୍ମଦାତା ଧନ୍ୟ ସେନାପତି !
ପ୍ରତିଭାରେ କୋଟି ବାର ଢାଳେ ମୁଁ ପ୍ରଣତି ।
ଉତ୍କଳର ଦୁ[illegible] ଦାନ
ତବ ପଦେ କି ଦେଇବ ଅଜ୍ଞ ତା ସନ୍ତାନ ?
ବିପ୍ଳବୀ ହେ ! ଢାଳିଗଲ ଅଗ୍ନିମନ୍ତ୍ର ବାଣୀ
ଉପନ୍ୟାସେ ବଜ୍ର ବର୍ଷା ଝଡ଼ରେ ଆହ୍ୱାନ ।
ମାତିଲ ସଂଗ୍ରାମେ ନିତ୍ୟ ଏ ସମାଜ ଲାଗି
କୋଟି ବାଧାବିଘ୍ନେ ତିଳେ ନ ପଡ଼ିଲ ଭାଙ୍ଗି ।
କରି ଦେଶ ଜାତି ସେବା, ସେବା ସମାଜର
ସୁପ୍ତ ଶ୍ରବଣେ ଢାଳି ଜାଗୃତି ମନ୍ତ୍ରର
ପ୍ରତିକୂଳ ଶକ୍ତି ଦଳି ଏ ଉତ୍କଳଭୂମେ
ଦୁଃଖର ଗୌରବ ପଦେ ଶୁଣାଇଲ ତୁମେ—
'ଅଭ୍ୟାସ ହୋଇଛି ଯାର ଗାଇବାର ଗୀତ
ଶତ ବାଧା ବିଘ୍ନ ତେଜି ଗାଇବ ନିଶ୍ଚିତ ।'
ଜାତିକଣ୍ଠେ ଢାଳି ଶତ ନବ ଉଦ୍‌ବୋଧନ
ବିଘ୍ନ ମଧ୍ୟେ କରିଗଲ ଅଦ୍ଭୁତ ସାଧନ ।
କୁସଂସ୍କାର-ଅନ୍ଧକାର ଘୁଞ୍ଚାଇବ ଲାଗି
ପଲ୍ଲୀ ବକ୍ଷେ ସଦା ତୁମେ ଉଠିଛ ହେ ଜାଗି—
ଜାତିର ଅର୍ଦ୍ଧେକ ଯହିଁ ଭୋଗେ ଆଜୀବନ
ଝଡ଼ ବନ୍ୟା ଦୈନ୍ୟ ଦୁଃଖ ରୋଗ ଅର୍ଦ୍ଧାଶନ ।
ହୃଦୟ-ଦରଦ ଢାଳି ଗଲ ତୁମେ ଜାଳି
ସଂସ୍କାର-ଉଜ୍ଜ୍ୱଳନ୍ତ ଚେତନା- ଦୀପାଳି ।

ଜାତୀୟ ସଂଗ୍ରାମେ ସାଜି ସୁଦକ୍ଷ ସାରଥି
ନିଃଶଙ୍କେ ଚାଳିଛ ରଥ, ଧନ୍ୟ ସେନାପତି !
ବିଷଁତଜୀବନେ ଉତ୍ଫୁଲ ନୋହି ମ୍ରିୟମାଣ
ହସାଇଛ ରସସିକ୍ତ ଲେଖଣୀର ପ୍ରାଣ ।

ହେ ଅମର କଳାଶିଳ୍ପୀ ! ହେ ବାସ୍ତବବାଦୀ !
ଶୂନ୍ୟ କରିଗଲ ଦେଶେ ଯେଉଁ ସ୍ୱର୍ଣ୍ଣଗାଦୀ
ପୂର୍ଣ୍ଣ ତା କରିବ କିଏ ? ଅଙ୍କିବ କେ ହାସ୍ୟ
ଦରିଦ୍ର କୁଟିରଠାରୁ ରାଜହର୍ମ୍ୟ ଯାଏ ?
ଶିନିବଟି ଆଉ କାର ସୁଦକ୍ଷ ଅଙ୍ଗୁଳି
ଚଳାଇ ସୁଷମା-ଝର ଶବଳିତ ତୂଳି ?
ଶାରଦା   ଯୋଗ୍ୟ ସୁତ ହେ ଯୁଗବନ୍ଦନ !
ଉତ୍କଳର ହସ୍ତେ ଦେଲ ଯେ ଅମୂଲ୍ୟ ଧନ
ଯାବତ ଥିବଟି ଶିଳ୍ପ ସାହିତ୍ୟ, ଏ ଜାତି
ପୂଜିବ ସ୍ମୃତିରେ ତବ ନିତ୍ୟ ଶିର ପାତି ।

## ମେହେର କବି ଗଙ୍ଗାଧର

କବିକୁଳଚନ୍ଦ୍ର ଅହେ ଗଙ୍ଗାଧର !
ତୁମ ବିରଚିତ ସାହିତ୍ୟ-ସମ୍ଭାର
ଚିରଦିନ ରହି ବୀଣାପାଣି-ଅଲେ
ଅମର କରିଛି ତୁମକୁ ଉତ୍କଳେ ।

ତବ ସୁଲଳିତ କାବ୍ୟ 'ଇନ୍ଦୁମତୀ'
ଧନ୍ୟ ସେ ଲେଖାର ଗୁରୁ ପରିପାଟୀ
ଧନ୍ୟ କବି ତବ ଲେଖନୀର ତୂଳୀ
ଜନ୍ମ ସଙ୍ଗେ ସଙ୍ଗେ ଆସିଥିଲ ଧରି ।

ଲଭି ବିଜ୍ଞଙ୍କର ଅମୋଘ ଆଶିଷ
କାଳିଦାସଙ୍କର ହେଲ ପଟ୍ଟଶିଷ୍ୟ
ବାଣୀ-ତପୋବନେ ହେ ବିଜ୍ଞ ତାପସ !
ବିତରିଲ କାବ୍ୟ-ସାମବେଦ ରସ ।

ଅନ୍ଧ ଘଇଙ୍କରେ ସ୍ଫଟିକ ଦର୍ପଣ
ମରୁକୋଳେ ଅବା ସୁଶ୍ୟାମଳ ତୃଣ
ଝଡ଼ ଦେଶେ ଯଥା ସ୍ଥିର ଦୀପଛବି
ଏ ଘଇଙ୍କେ ତଥା ଜନ୍ମ ତବ କବି !

ଦେଶ ବା ସମାଜେ ଲେଖନୀ ତୁମର
କରି ନାହିଁ ଖାଲି ପ୍ରଭାବ ପ୍ରସାର
ଅମର ପ୍ରତିଭା ତବ ସବୁଠାଏଁ
ଖେଳି ଯାଇଅଛି ମଳୟ ପରାୟେ ।

ଦାରିଦ୍ର୍ୟ-କବଳୁଁ ସେ ଦିବ୍ୟ ପ୍ରତିଭା
ମୁକ୍ତ ଥିଲେ କବି, ମନେ ହୁଏ କିବା
ବର୍ଦ୍ଧି ସାବଲୀଳେ ସ୍ରୋତସ୍ୱିନୀ ପରି
ମାଡ଼ି ଯାଇଥାନ୍ତା ବହୁ ଦୂର ଧରି ।

ମାତର ତ ଏହା ଦୁନିଆର ଲୀଳା
ପ୍ରଗତି-ଅଯୂନେ ପଦେ ବାନ୍ଧେ ଶିଳା
ସବୁ ବୁଝି ତେଣୁ ହେ ଉଦାରମନା !
ଦୈନ୍ୟ ପାଇଁ ତଳେ ନ କଲ ଶୋଚନା ।

ଅଭାବର ଶତ କ୍ରୂର ଉପହାସ
କରିନି ମଳିନ ତୁମର ବିକାଶ
ଜଗତେ ପ୍ରତିଭା ଚିର ପରିମଳ
ପ୍ରକାଶେ ନିଜରେ ଯଥା ଶତଦଳ ।

ପ୍ରତିଭାର ତବ ମାର୍ଜନା ଲାଗି
ଉଠିନି ଏ ଜାତି ଏବେ ସୁଦ୍ଧା ଜାଗି
କାବ୍ୟନିଧି ତବ ତଥାପି ବରେଣ୍ୟ !
କସ୍ତୁରିକା ସମ କରେ ସମ୍ମୋହନ ।

ଓଡ଼ିଆ ସାହିତ୍ୟ ଥିବ ଯେତେ ଦିନ
ଥିବ ଯେତେ ଦିନ 'ତପସ୍ୱିନୀ' ଚନ୍ଦ୍ର
'ଉତ୍କଳଲକ୍ଷ୍ମୀ'ର ଅନବଦ୍ୟ ଆଭା
ଦୀପିବ ଉତ୍କଳ-ସୁଧୀବର-ସଭା ।

ଗଢ଼ି ଗଲ ଯେଉଁ ସାହିତ୍ୟର ଭିତ୍ତି
କରିବ ସମ୍ବଲ ଗରବ ଏ ଜାତି
ସ୍ତବକିତ ହେମ ମୁକୁତାର ସର
କାବ୍ୟ-ଉପବନେ 'ପ୍ରଣୟବଲ୍ଲରୀ' ।

କବିତା-ବିଭବେ ଯେ 'ଅରଘଥାଳି'
ବାଢ଼ି ଗଲ କାବ୍ୟ-ଉପବନ-ମାଳୀ !
ବାଣୀପଦେ, ତାହା ଚିରମନୋହର
ଭାରତୀ-ଭକତ ହେ କବି-ମିହିର !

# ପଲ୍ଲୀପ୍ରାଣ ନନ୍ଦକିଶୋର

କାହିଁ ଗଲ ପଲ୍ଲୀପ୍ରାଣ ହେ ନନ୍ଦକିଶୋର !
ନିଖିଳ ଉତ୍କଳପ୍ରାଣେ ଆଣି ହାହାକାର ?
ହରାଇ ଦେଶମାତୃକା ତୁମ ପରି ପୁଅ
ନୟନୁ ଝରାଏ ଅଶ୍ରୁଧାରା ଅହରହ ।
ଜନମି ତ ମରୁଛନ୍ତି ପ୍ରାଣୀ ଅଗଣନ
ମାତ୍ର ସେ କୋଟି ଜନମେ କିବା ପ୍ରୟୋଜନ ?
ତୁମ ପରି କବି କିନ୍ତୁ ଗୋଟିଏ ହରାଇ
ଫେରି ପାଇବାକୁ ଯେହେତୁ ଆଉ ଆଶା ନାହିଁ ।
ତୁମପାଇଁ ଉତ୍କଳର ଶତ ପଲ୍ଲୀଗ୍ରାମ
ଝୁରୁଛନ୍ତି ଦିବାନିଶି ସ୍ମରି ତବ ନାମ
ହିମଛଳେ ମୁଞ୍ଚେ ଅଶ୍ରୁ ଶ୍ୟାମ ଦୂର୍ବାଘାସ
କାନନ ମର୍ମରଉଠେ ତେଜି ଦୀର୍ଘଶ୍ୱାସ ।
ପଲ୍ଲୀ-ସୁଷମା-ରସିକ ତୁମ ପରି କେହି
ନିଖିଳ ଉତ୍କଳେ ଆଜି ଜଣେ ଦେଖା ନାହିଁ ।
କି ମଧୁ କଳ୍ପନା ସଙ୍ଗେ କରି ଅହେ କବି !
ଚିତ୍ରିଲ ପଲ୍ଲୀର ଗୃରୁ ବିମୋହନ ଛବି ।
ଊଷାର ଅଧରରେ ମୃଦୁ ନବବଧୂହାସ
ଫୁଟାଏ ଛନ୍ଦରେ ତବ କଳ୍ପନା-ଉଚ୍ଛ୍ୱାସ
ପ୍ରାବୃଟର ଶ୍ରୀ ଯେବେ ଧରଣୀରେ ଖେଳେ
'ବରଷା କବିତା' ତବ ଜାଗେ ପ୍ରାଣତଳେ ।

ଗଗନେ ଗରଜେ ମେଘ, ତଳେ ଝଞ୍ଜା ଡାକେ,
ହୃଦୟ-ଫଳକେ ଶତ ଦୁଃଖ-ଛବି ଆଙ୍କେ—
ବିରହିଣୀ କାଦମ୍ବିନୀ—ଯା ହୃଦ-କନ୍ଦନ
ନିଠୁର ନିୟତିବଶେ ହୋଇଛି ଦହନ ।
ଉଇଁଲା ବସନ୍ତପ୍ରାତେ ଯେବେ ବାଳରବି
କେଉଁ ପଟ୍ଟ ତୂଳୀମୁଖେ ଅଙ୍କିଲ ସେ ଛବି !
ଶିଶୁମୁଖେ ଫୁଟେ ଅଳ ଯେ ଅବ୍ୟକ୍ତ ଟ ଃ
ଶ୍ରବଣେ ତା ଜାଗିଉଠେ ତବ ମଧୁସ୍ମୃତ ।
ପଲ୍ଲୀଗୃହେ ଶୁଣି ସ୍ୱର ତାମ୍ରଚୂଡ଼ାଙ୍କର
ବାଢ଼ି ଦେଲ ଯେବେ ବଧୂ ତଣ୍ଡୁଲ ଆଧାର
କି କଥା କହୁଲ କାକ ଚଞ୍ଚୁ ଦେଇ ଭୂମେ
ସେ ବାଣୀ ଫୁଟିଲ ତୁମ ଲେଖନୀର ମୁନେ ।
କବିତାନିବହ ତବ ପଢ଼ିଲେ ହେ କବି !
ମୂର୍ତ୍ତିମନ୍ତ ହୋଇ ଉଠେ ନେତ୍ରେ ପଲ୍ଲୀଛବି ।
ଅନୂଢ଼ା କୁମାରୀ ସେଠ ଖୁଦୁକୁଣୀ ପୀଠେ
ନବୋଢ଼ା ବଧୂଙ୍କ ଭେଟ ପୁଷ୍ପବତୀ ତୁଠେ ।
ସଞ୍ଜର ଗଞ୍ଜଣୀ ମାଡ଼ ଭାଗବତ ଘରେ
ଶୃଗାଳ କୁହାଟ ପୁଣି ମଶାଣି ପ୍ରାନ୍ତରେ ।
ନିଶିର ପିଶାଚ ସମ ଦଣ୍ଡ ଆସି ଡାକ
ଉପୁଜାଏ ସୁପ୍ତ ଶିଶୁପ୍ରାଣେ ଯା ଆତଙ୍କ ।
ନିଦାଘର ଝାଞ୍ଜି ସ୍ୱନେ, ବରଷାର ତାନେ
ଯେ ବ୍ୟଥାର ବାଣୀ ଭରେ ପ୍ରକୃତର କାନେ
ସେ ନୀରବ ରହସ୍ୟର ବର୍ମ ଉନ୍ମୋଚନ
କରିବାକୁ ଏକା ତୁମେ ହୋଇଛ ଭାଜନ ।

ତାହାର କବଳେ ପଡ଼ି ସକଳ ଶକତି
ହରାଇ ଅବଶ ଦେହ ନେତ୍ର ଦିବ୍ୟଜ୍ୟୋତି
ରୋଗଶଯ୍ୟା ପରେ ଶୋଇ ପଶ୍ଚିମ ଜୀବନେ
ଚାଲିଗଲ ତୁମେ କବି ସାହିତ୍ୟ-କାନନେ—
ରୂପରସଗନ୍ଧମୟ ଯେ 'କନକଲତା'
ହୃଦୟ-ପାତ୍ରରୁ ଯେତେକ ସକଳ ମମତା
ନିଃଶେଷି ଦେଇଛ ତହିଁ ଢାଳି ପଲ୍ଲୀପ୍ରାଣ
ସମାଜେ ଅସଜ ଯାର ଅଦର୍ଶ ମହାନ ।
ଉପକଥା ଛଳେ ତୁମେ ନାରୀର ଆକୂତି
କୋମଳ ଆବେଗମୟ ସୂକ୍ଷ୍ମ ଅନୁଭୂତି
ନିପୁଣ ତୂଳିକା ମୁନେ ପ୍ରକାଶି ହେ କବି ।
ରଖିଗଲ ଏକ ମଧୁ ଅନୁପମ ଛବି ।
ସମାଜର ନାରୀହୃଦସ୍ପନ୍ଦନ ଯେସନେ
ଅନୁଭୂତ ହୋଇ ତୁମ ସୁକୋମଳ ପ୍ରାଣେ
ତା ପାଇଁ ପ୍ରଚ୍ଛନ୍ନ ଯେତେ ସେନେହ ଉଚ୍ଛ୍ୱାସ
'କନକଲତା'ରେ ତବ ଲଭିଛି ପ୍ରକାଶ ।
ଯାବତ ଏ ଦେଶେ ଥିବ ଶତ ଶତ ପଲ୍ଲୀ
ହସୁଥିବ ଯେତେ ଦିନ ଶ୍ୟାମ ତରୁବଲ୍ଲୀ
ଗାଉଥିବ ଚୂତକୁଞ୍ଜେ 'ବସନ୍ତକୋକିଳ'
ବହୁଥିବ ଯେତେ ଦିନ 'ନିର୍ଝରିଣୀ' ଜଳ
ସେତେ ଦିନ ଯାଏ କବି, ଏ ଓଡ଼ିଆ ଜାତି
ବିସୋରି ପାରିବ ନାହିଁ ତବ ମଧୁ ସ୍ମୃତି;
କବିତା ତୁମର ଗାଇ ବିପଞ୍ଚୀର ତାନେ
ଅଙ୍କିବ ସ୍ୱଦେଶ-ଛବି ତରୁଣ-ପରାଣେ ।

## ଭକ୍ତକବି ମଧୁସୂଦନ

ଉତ୍କଳମାତାର ଅଟେ ଯୋଗ୍ୟତମ ସୁତ
ଶ୍ରୀ ମଧୁସୂଦନ ସାଧୁଗୁଣଗଣଯୁତ !
ଲଭିଥିଲ ଜନ୍ମ ଯିଏ ନରଦେହ ଧରି
ତଥେ ତବ ଦେବଧର୍ମ ଥିଲେ ବନ୍ଧୁ ଭରି ।
ମହର୍ଷିପ୍ରବର ତୁମେ, ମହର୍ଷିର ଗୁଣ
ସରଳ ହୃଦୟେ ତବ ଲଭିଥିଲା ସ୍ଥାନ ।
ବହୁ ତପସ୍ୟାର ଫଳେ ଜନନୀ ଉତ୍କଳ
ତବ ସମ ଯୋଗ୍ୟ ସୁତ କରିଥିଲା କୋଳ ।
ଜୀବନର ଥିଲା ତବ ସତ୍ୟ ମହାବ୍ରତ
ନେଇଥିଲ ବାଛି ତେଣୁ ପୁଣ୍ୟ ଧର୍ମପଥ ।
ହିଂସା କପଟତା ତୁମଠାରୁ ବହୁ ଦୂରେ
ପରାଜିତ ସମ ଛିଡ଼ାଥିଲେ ଯୁକ୍ତକରେ ।
ଦେଶସେବା ଜୀବନର ଥିଲା ମୁଖ୍ୟ କର୍ମ
ଆତିଥ୍ୟରେ ପୂରିଥିଲା ତବ ଦେବପ୍ରାଣ ।
ମହାପୁରୁଷଙ୍କ ତୁମେ ଥିଲ ଅବତାର
ଦେବତ୍ୱର ଉପାଦାନେ ବଳିଷ୍ଠ ଶରୀର
ହୋଇଥିଲା ଗଢ଼ା ତବ—ତେଣୁ ଋଷିପ୍ରାଣ !
ସାଧିଲ ଉତ୍କଳେ ଜନ୍ମି ପ୍ରଭୂତ କଲ୍ୟାଣ ।

ଭଜନ ସାହିତ୍ୟ ତୁମେ ରଚି ଛନ୍ଦ ଗୀତେ
କରିଲ ପ୍ରଚୁର ଛାତ୍ରସମାଜର ହିତେ ।
"ଅଖିଳ ବ୍ରହ୍ମାଣ୍ଡପତି ମୋ ଜୀବନସ୍ୱାମୀ"
ଶିଶୁର ହୃଦୟେ ଦେଲ ଭକ୍ତି-ବୀଜ ବୁଣି ।
ଉତ୍କଳେ ଅମୃତ ସମ ତବ ପୁଣ୍ୟ ଗୀତି
ବାଳ ବୃଦ୍ଧ ବନିତାର ପ୍ରାଣେ ଦିଏ ପ୍ରୀତି ।
ଶାରଦାଭବନ ଥିବ ଯାବତ ଉତ୍କଳେ
ପାଉଥିବ ପୂଜା ତୁମେ କୋବିଦମଣ୍ଡଳେ ।
ଯାବତ ଥିବ ଏ ଭବେ ଭକତର ସଭା
ରହିଥିବ ଦୀପ୍ତ ତବ ଅମର ପ୍ରତିଭା ।

## ଦେଶପ୍ରାଣ ଗୋପବନ୍ଧୁ

ଅହେ ପ୍ରାତଃସ୍ମରଣୀୟ ଦୀନଜନବନ୍ଧୁ
ନିଖିଳ ଉତ୍କଳଜନେନ୍ଦୁ ଲୋତକ ବୁହାଇ
ଦେଶହିତେ ଟାଳି ତବ ପ୍ରତି ରକ୍ତବିନ୍ଦୁ
ରହିଲ ହେ କେଉଁ ଦେଶେ ଚିରଦିନ ପାଇଁ ?

ହେ ଦେଶବତ୍ସଳ, ଅଜ ତୁମର ଅଭାବେ
ଦରିଦ୍ର ଉତ୍କଳପ୍ରାଣ କରେ ହାହାକାର
ଚିରଦିନ କାନ୍ଦୁଥିବେ ଏ ଦେଶେ ସରବେ
ସ୍ମରି ତବ ଗୁଣାବଳୀ ଅହେ ତ୍ୟାଗବୀର !

ଉତ୍କଳକୁ ଅପଣାର ପରିବାର ମଣି
ଦେଶହିତେ, କିଏ ଦେବ ସର୍ବସ୍ୱ ହେ ଟାଳି ?
ଅସମ୍ଭବ ଅଟେ ତାହା ହେ ବୀରଅଗ୍ରଣୀ
ଉପମା ତୁମେହିଁ ଦେଶେ ତୁମର ହେ ଖାଲି ।

କେତେ ଦିନ ପରେ ଅଉ ବିଧିର ନିର୍ଦ୍ଦେଶେ
ଶୂନ୍ୟ ସ୍ଥାନ ତବ କିଏ କରିବ ପୂରଣ
ଅବତୀର୍ଣ୍ଣ ହୋଇ ଦେଶେ ଗୋପବନ୍ଧୁ ବେଶେ
ଜାଣନ୍ତି ତା ସର୍ବଦର୍ଶୀ ଏକା ଭଗବାନ ।

ଦେଶହିତେ କଏ ଆଉ ଭୋଗି କାରାବାସ
ଆଣିବ ଉତ୍କଳପ୍ରାଣେ ନବୀନ ଉତ୍ସାହ
ବୁଭୁକ୍ଷୁ ବଦନେ ଆଉ କେ ଫୁଟାଇ ହାସ
ଢାଳିବ ଦରିଦ୍ର ଲାଗି ଧାର ଧାର ଲୁହ ?

ଅଦ୍ଭୁତ କରମଶୀଳ ହେ ବୀରକେଶରୀ
ଛିନ୍ନମସ୍ତା ଉତ୍କଳର ପୂର୍ଣ୍ଣାଙ୍ଗ ସପନ
ଦେଖିବାକୁ ଏ ଜାତିରେ ଅଉ ତୁମ ପରି
ହେ ଦେବତା ! କେହି ଆଉ ନୋହିଲା ଭାଜନ ।

ଦରିଦ୍ର ଉତ୍କଳେ ଲାଗିଅଛି ଚିରଦିନ
ସେହି ବନ୍ୟାର ତାଣ୍ଡବ, ଝଡ଼ର ବିଦ୍ରୂପ
ସେହି ଲକ୍ଷ କଙ୍କାଳର ତୀବ୍ର ଅନଶନ
ମରଣର ଅଭିନୟେ ପ୍ରେତାତ୍ମାର ସ୍ତୂପ ।

ମାନ ଧରି ସହିଷ୍ଣୁତା ହିମାଚଳ ସମ
ଗୃହେ ଗୂଢ଼ କଏ ନିଜ ବୁକୁଚିରି ଧନ
ଯାଉଛି ଅକାଳ-ରଣେ ପିନ୍ଧି ତ୍ୟାଗ-ବର୍ମ
କୋଟି ପ୍ରାଣ ପାଇଁ ସାଜି ନିର୍ଭୀକ ସଇନ ?

ଆହେ ଦେବ ! ତପୋନିଷ୍ଠ ଭଗୀରଥ ପରି
ଜାତୀୟତା-ସୁରଧୁନୀ ଆଣିଲ ଯା ବାହି
ପରାଧୀନ ଜାତି ପିଇ ତା ପବିତ୍ର ବାରି
ମୁକ୍ତପଥେ ସଚକିତେ ଉଠିଲାକ ଚାହିଁ ।

ଖୁଣ୍ଟିବ କି ବାରେ ଏବେ ନବଯୁଗ-ଗୁରୁ
ଅନଶନ-ପ୍ରପୀଡ଼ିତ ଓଡ଼ିଆର ମୁଖେ
ଥାଇ ହେ ଅମରବନ୍ଦ୍ୟ ! ସେ ସରଗପୁରୁ
କେତେ ଯେ ଦୁଃଖର ଝଡ଼ ବାଜେ ତାର ବୁକେ ।

ଅଭିଶପ୍ତ ଏ ଉତ୍କଳ ଚିର ଭାଗ୍ୟହୀନ
ତୁମ ପରି ଯୋଗ୍ୟ ସୁତ ହରାଇ ଅକାଳେ
ଦୀର୍ଘ ଆୟୁ ବହିଥିଲେ ତବ ଅନୁଷ୍ଠାନ
ପୂର୍ଣ୍ଣାଙ୍ଗ ପ୍ରାପତ ହୋଇଥାଆନ୍ତେ ସକଳେ ।

ହେ ତାପସ ! ବହୁମୁଖୀ ପ୍ରତିଭା ତୁମରି
ଶତମୁଖୀ ନଦୀ ସମ ଉପଶାଖା ଧରି
ବହୁଦିଗେ ଗତି ରଚି ଦୀନ ଉତ୍କଳର
ପାଇଥିଲା ଖୋଜି ତାର ଭାବି-ଭାଗ୍ୟ-ଡୋରି ।

କବି କର୍ମୀ ତ୍ୟାଗୀ ତୁମେ ଜାଳି ପୁଣ୍ୟ ବର୍ତ୍ତୀ
ଜାତିର ପରାଣେ ଯେଣୁ ଆଣିଲେ ସ୍ପନ୍ଦନ,
ଜନ୍ମିବ କାହିଁ କାହୁଁ ତାଙ୍କ ମହୀମୂର୍ତ୍ତି
ମରତ-ସାହାସ୍ୱତଳେ ଥିଲେ ଯେ ନନ୍ଦନ ?

'ସମ୍ବାଦପତ୍ର' ର ତୁମେ ପ୍ରଥମ ଜନକ
ପରକାଶି ଅନବଦ୍ୟ ମୌଳିକ ପ୍ରବନ୍ଧ
ଜାତୀୟ ଭାଷାରେ ବୀର ! କରି ପ୍ରାଣ ଦାନ
ଦେଇ ଯାଇଅଛ ତାରେ ସର୍ବୋଚ୍ଚ ଅସ୍ମିତା ।

ଉତ୍କଳର ନଦୀ ଗିରି ପ୍ରାନ୍ତର କାନନେ
ଗମ୍ଭୀର ସେନେହ ତବ କେସନେ ମଣ୍ଡିତ
କେସନେ ରସନା ତବ ସ୍ଫୁର୍ତ୍ତ ଭାବ ଭଣେ
"କାବ୍ୟ କବିତା"ରେ ତାହା ହୁଏ ଅନୁଭୂତ ।

ଓଡ଼ିଆ ଜାତିର ଗତ ଗୌରବ କାହାଣୀ
ସ୍ୱକୀୟ ମଧୁର ଭାଷେ ହେ ବୀର କୋବିଦ
ପ୍ରକାଶି ଅଗ୍ନେୟ ଅତି ଉଚ୍ଛ୍ୱସିତ ବାଣୀ
କରିଅଛ ଏ ଜାତିରେ ସତତ ଉଦ୍‌ବୁଦ୍ଧ ।

"ଦେଶର ସ୍ୱରାଜ୍ୟପଥେ ଅଛି ଯେତେ ଗାଡ଼
ପୂରିଯାଉ ପଡ଼ି ତହିଁ ମୋର ମାଂସ ହାଡ଼"
ଏଭଳି ଆହ୍ୱାନ ବାଣୀ କେହି ତୁମ ସରି
ଶୁଣାଇ ତ ନାହିଁ ଦେଶେ ନରଦେହ ଧରି !

ତୁମେ ଯଦି ଖାଲି ବାଣୀ-ଉପାସକ ରୂପେ
ନିପୁଣ ତୂଳିକା ମୁନେ ଯାପିଥାନ୍ତ ଦିନ
ପ୍ରତେ ହୁଏ, ଲଭିଥାନ୍ତା ସାହିତ୍ୟର ସ୍ତୂପେ
ତୁମରି କବିତାବଳି ସର୍ବୋଚ୍ଚ ଆସନ ।

ପାଲଟିଛି ଏ ଧରଣୀ ଯା ପରଶ ଲଭି
ସ୍ୱାର୍ଥହିଂସାଦ୍ୱେଷହୀନ ସୁନ୍ଦର ସରଗ
ସେ କି ମରିପାରେ ଅଛି ଯାବତ ଏ ରବି
ବିନ୍ଦୁ ବିନ୍ଦୁ ରକତରେ ଦେଲ ଯେ ଅରଘ ?

ତୁମେ ଯଦି ଗୋପବନ୍ଧୁ ଯାଇଥାଅ ମରି
ତୁମ ସଙ୍ଗେ ମରିଅଛି କାତର ପରାଣ
କେବେ ପୁଣି ସେ ରାଇଜ୍ଞୁଁ ଆସିଲେ ହେଁ ଫେରି
ପୂଜିବେ ଉତ୍କଳୀ ତବ ପଙ୍କଜ-ଚରଣ ।

ଯଦି ଅବା ତୁମେ ଆଜି ତେଜି ମରଦେହ
ଯାଇଅଛ ଏ ଦେଶର ମାଟିତଳେ ଲୁଚି
ବିନ୍ଦୁ ବିନ୍ଦୁ ତୁମରି ସେ ରକ୍ତର ବ୍ୟୂହ
ରଖିଛି ଅମର କରି ତୁମକୁ ଦଧୀଚି !

## ମନସ୍ୱୀ ମଧୁସୂଦନ

ଅଜ୍ଞାନ-ତମିର-ଦେଶ ଜ୍ଞାନାଲୋକେ
ଅଲୋକିତ କରି
ଜନ୍ମିଲ ଉତ୍କଳ-କୋଳେ ଦେଶପ୍ରାଣ
ହେ ବୀରକେଶରି !
ଫୁଟିଲ ଉତ୍କଳ-ସରେ ଫୁଟି ତୁମେ
ସ୍ୱଚ୍ଛ ଅରବିନ୍ଦ
ବିତରିଲ ପ୍ରତି ହାତେ ହେ ମନୀଷି !
ଜ୍ଞାନ-ମକରନ୍ଦ ।
ପରଶ ପଥର ସ୍ପର୍ଶେ ଲୌହ ଯଥା
ପାଲଟେ କାଞ୍ଚନ
ତୁମ ପରି ସୁଯୋଗ୍ୟ ସୁତ ପାଇ ମାତା
ଉତ୍କଳ ତେସନ ।
ସ୍ୱଦେଶପ୍ରେମିକ ବାଗ୍ମୀ ସତ୍ୟପ୍ରିୟ
ସର୍ବଗୁଣାଧାର
ନୀତିଶାସ୍ତ୍ରବିଶାରଦ ହେ ନିର୍ଭୀକ
ତ୍ୟାଗୀ ବୀରବର !
ଲେଖନୀ ଅକ୍ଷମ ମମ ବର୍ଣ୍ଣିବାକୁ
ଅଗାଧ ପାଣ୍ଡିତ୍ୟ
ଢାଳିଗଲ ସଭାମଞ୍ଚେ ଯେ ମଧୁର
ବକ୍ତୃତା ସାହିତ୍ୟ ।

ପୁନରପି ଜନ୍ମି ଆଉ ଉତ୍କଳରେ
ତୁମ ପରି କିଏ
କରିବ ସ୍ୱଦେଶ ଚିନ୍ତା ଜୀବନର
ଶେଷ ଶ୍ୱାସ ଯାଏ ?
ସ୍ୱାର୍ଥକୁ ସୁଦୂରେ ଥୋଇ ଦେଶପାଇଁ
ଢାଳି ମନପ୍ରାଣ
ପୁରପଲ୍ଲୀପ୍ରାଣେ ତୁମେ ଆଣିଅଛ
ନବ ଜାଗରଣ ।
ହେ ଚତୁର ବୁଦ୍ଧିଜୀବ ! ସ୍ୱାର୍ଥପଙ୍କେ
ହୋଇ ପୁରୋହିତ
ଜାତ-ପ୍ରେମ-ବହ୍ନି ତୁମେ ପ୍ରତି ପ୍ରାଣେ
କଲ ପ୍ରଜ୍ୱଳିତ ।
ସ୍ୱଦେଶର ଟେକ ପାଇଁ ନିଜ ସ୍ୱାର୍ଥେ
ଦେଇ ଜଳାଞ୍ଜଳି
ଯୋଡ଼ି ଦେଇଅଛ ତୁମେ ଜନନୀର
ବିଚ୍ଛିନ୍ନ ମଣ୍ଡଳ ।
ଶିଳ୍ପ କଳା କଉଶଳ ଦେଶେ ଦେଶେ
କରି ହେ ପ୍ରଚାର
ଜଡ଼ ଏ ଓଡ଼ିଆ ପିଣ୍ଡେ କରିଅଛ
ପ୍ରେରଣା ସଞ୍ଚାର ।
ହେ ଜନନୀ-ଅବତଂସ, ଜନ୍ମଭୂମି—
ଆଦ୍ୟ ସୂତ୍ରଧର !
ଶୁଣାଇଛ ପ୍ରତି କାନେ ସ୍ୱାଧୀନତା
ମୁକ୍ତି ମନ୍ତ୍ର ।

ବୀରଗୀତି ଗାଇ ପୁଣି କବିକଣ୍ଠେ
ମେଘମନ୍ଦ୍ର ସ୍ୱରେ
ତଡ଼ିତପ୍ରବାହ ତୁମେ ଖେଳାଇଛ
ପ୍ରତି ଧମନୀରେ ।
ବିରାଟ ଓଡ଼ିଆ ଜାତି ଗଢ଼ିବାର
କଳ୍ପନା ସପନ
ଏ କି ଅଛି ଦେଖଇ ଆଜ ଯେଉଁ ତୁମ
ପ୍ରତିଭା ମହାନ ?
ତୁମ ତପୋଭାବେ ବୀର ଏ ଦେଶ ଯେ
ତମିରେ ମଗନ
ପଥଭ୍ରଷ୍ଟ ଜନନୀର ଛନ୍ନ ଯେତେ
ଅରକ୍ଷ ସନ୍ତାନ ।
ଅରଜ ପ୍ରଭୂତ ବିତ୍ତ ଦେଶହିତେ
କଲ ସବୁ ବ୍ୟୟ
ପଥର ଭିଖାରି ସମ ରିକ୍ତହସ୍ତେ
ନେଇଛ ବିଦାୟ ।
ତେଣୁ ଆଜି ତ୍ରିସନ୍ଧ୍ୟାରେ ପଲ୍ଲୀପୁରେ
ଉଠେ ସେହି ଗାନ
"ତ୍ୟାଗବୀର ବୀରବାହୁ ଯୋଗ୍ୟସୁତ
ଶ୍ରୀ ମଧୁସୂଦନ ।"
ଆଧୁନିକ ଉତ୍କଳର ଯାହା କିଛି
ସର୍ବଶ୍ରେଷ୍ଠ କୃତ୍ୟ
ତା ତଳେ ଅଦେଖାଭାବେ ରହିଅଛି
ଲୁଚି ତୁମ ହାତ ।

ଏ ଦେଶ ପଦବୀ ଆଜି ଲଭିଅଛି
ସ୍ୱକୀୟ ପ୍ରତିଷ୍ଠା
ତା ମୂଳେ ରହିଛି ବୀର ! ସୁକଠୋର
ତବ କର୍ମନିଷ୍ଠା ।
ଉତ୍କଳ ପାଇଛି ଫେର ପଦ ତାର
ହୃତ-ଗୌରବ
ଜାତିର ସମ୍ମାନ ଆଉ ପ୍ରକୃଶିଳ୍ପ
ଅମୂଲ୍ୟ ବିଭବ—
ହରାଇ ନାହାନ୍ତି ଆଶା ଯଦି ଆଜି
ଦୀନ ପ୍ରଜାକୁଳ
ତା ମୂଳେ ନିହିତ ଅଛି ବୀର ! ତୁମ
ଏକାଗ୍ରତା ଫଳ ।
ଯଦ୍ୟପି ହିନ୍ଦୁଧର୍ମର ସମାଧାନ
ଆଚରଣ ଲାଗି
ଥିଲ ତୁମେ ବହୁ ଦୂରେ ନିର୍ମମ ଏ
ସମାଜ ତ୍ୟାଗି—
ତଥାପି ଯେ ପ୍ରତିନିଧି ଥିଲ ଜଣେ
ହିନ୍ଦୁ ସମାଜର
ହୋଇଛି ତା ପ୍ରମାଣିତ ତୁମଠାରେ
ଶତାଧିକ ବାର ।
ଅଭାଗୀ ଉତ୍କଳମାତା ଶିରସ୍ଥାନ
କ୍ଷୀଣ ମେରୁଦଣ୍ଡ
ଭାଙ୍ଗି ଯେ ପଡ଼ିଛି ତବ ତିରୋଧାନେ
ହୋଇ ଶତଖଣ୍ଡ ।

ଜାତୀୟ ଜୀବନେ ଯେତେ ଥିଲା ପାପ
ଅନ୍ଧ କୁସଂସ୍କାର
ବନ୍ୟାସ୍ରୋତ ସମ ଭାସି ଯାଇଛି ତା
ଲାଗି ତୁମ କର ।
ନବୋତ୍କଳ-ଜନ୍ମଦାତା କୁଳବୃଦ୍ଧ
ହେ ମଧୁସୂଦନ !
ଋଣୀ ତବ ପଦତଳେ ଏ ଉତ୍କଳ-
ଜାତି ଚିରଦିନ ।

## ବାଗ୍ମୀ ବିଶ୍ୱନାଥ

ଶୁଭକ୍ଷଣେ ଜନ୍ମି ଅହେ ବୀର ବିଶ୍ୱନାଥ, !
ଚଳାଇଲ ନିପୁଣ କରେ ସାରସ୍ୱତ ରଥ ।
ଉତ୍କଳମାତାର ତୁମେ ସୁଯୋଗ୍ୟ ସନ୍ତାନ
ବକ୍ତୃତା-ମଣ୍ଡପେ ଥିଲ କେଶରୀ ସମାନ ।
ସାହିତ୍ୟ-ପୁରୋଧା ବାଗ୍ମୀ ହେ ପ୍ରେରଣାଦାତା
ତୁମ ସମ ପୁତ୍ର ଧରି ଧନ୍ୟ ଦେଶମାତା ।
ସଞ୍ଜୀବନୀ ମନ୍ତ୍ର ପଢ଼ି ସାହିତ୍ୟ-ମଶାଣେ
ଯାଇଅଛ ସ୍ମୃତି ତବ ରଖି କୋଟିପ୍ରାଣେ ।

ହେ ନିର୍ଭିକ ସଂସ୍କାରକ ! ବାକ୍ୟ ତୁମ ଶର
ଭଜାଅଛି ଲକ୍ଷ ଶତ ଅନ୍ଧ କୁସଂସ୍କାର ।
ସନ୍ଦର୍ଭରଚକ ବାଗ୍ମୀ ନିର୍ଭିକ ସରଳ !
ସଞ୍ଚାରିଛ ଓଡ଼ିଆର ପ୍ରାଣେ ନବ ବଳ
ଆବର ଉତ୍ସାହ ଶକ୍ତି, ଶୋଣିତେ ସ୍ପନ୍ଦନ
ଦେଶମାତୃକାର ତୁମେ ବରେଣ୍ୟ ନନ୍ଦନ ।

ଉପାଧି ବିରଜ ଅହେ ଦେଶଭକ୍ତ ବୀର !
ରଖିଲ ଦୃଷ୍ଟାନ୍ତ ତୁମ ମହତ ପ୍ରାଣର ।
ତେଣୁ ତବ ସ୍ମୃତି ଅହେ ଅମୃତସନ୍ତାନ !
ରହିଲ ସାରଦା ପୀଠେ ଚିର ଅମଳିନ ।

ଅସୀମ ସାହସ ଭରି ନିଃଶଙ୍କ ହୃଦୟେ
ତୁମ ପରି ସଭ୍ୟମଞ୍ଚ ମୁଖରିଲା କିଏ ?
ଖେଳାଇ ଚମକ୍ କେବା ବିଦ୍ୟୁତ୍ପ୍ରଭା ଜିଣି
ତୁମ ସମ ଢାଳି ପ୍ରାଣେ ଅଗ୍ନିମୟୀ ବାଣୀ
ଗରଜି ସଭାରେ ମନ୍ଦ୍ର ସ୍ତନିତ ସମାନ
ଉଦ୍‌ବୁଦ୍ଧ କରିବ କ୍ଷଣେ ସଭାସଦମାନ ?

ଓଡ଼ିଆ ଜାତିର ଯେତେ ଅନ୍ଧ କୁସଂସ୍କାର
ବଳିଷ୍ଠ ସାହିତ୍ୟ ଭାଷେ କରି ତା ପ୍ରଚାର
ନବଯୁଗସ୍ରଷ୍ଟା ରୂପେ ଛାପି ମୁଦ୍ରାଯନ୍ତ୍ର
ଦେଖାଇଛ ତୁମ ମହା ଆଦର୍ଶ ସର୍ବସ ।

ସାହିତ୍ୟ-ପୁରୋଧା ଭୀମବର୍ମା ବିଶ୍ୱନାଥ !
ତୁମେହିଁ ଉତ୍କଳେ ନାରୀଶିକ୍ଷା-ଅଗ୍ରଦୂତ
ଯେଣୁ ଅନ୍ତଃପୁରବନ୍ଦୀ-ଦୁର୍ଦ୍ଦଶା ବିଲୋକି
ଜାଗରଣ ଇତିହାସ ଗଲ ତୁମେ ଲେଖି
"ବିବାହ ପ୍ରବନ୍ଧେ" ଯାହା ଜାତିର ପରାଣେ
ଏବେ ଫୁଙ୍କା ନବ ଶକ୍ତି ଉଦ୍ଦୀପନା ଆଣେ ।
ତୁମ ତିରୋଭାବେ ଦେଶ ହୋଇ ହୀନ ବଳ
ସ୍ମୃତିହିଁ ତୁମରି ଯାହା ରଖିଛନ୍ତି ସମ୍ବଳ ।
ମାତ୍ର ତୁମ ବହୁମୁଖୀ ମହତ୍ତ୍ୱ ପ୍ରତିଭା
ଦେଶର ଅଟଳ ଚିରଦିନ ହୋଇଥିବ ଶୋଭା ।

# କବି କୁନ୍ତଳା

ଉତ୍କଳ-ଉତ୍ସଙ୍ଗେ ଜନ୍ମି ଶୁଭକ୍ଷଣେ କୁନ୍ତଳାକୁମାରୀ !
ଦେଖାଇଲ ନାରୀଶକ୍ତି ଜୀବନରେ ଶୁଭକର୍ମ କରି ।
ରମଣୀକୁଳ-ଆଦର୍ଶ କବୟିତ୍ରୀ ହେ ପ୍ରଗତିଶୀଳା !
ଦେବୀ ବୀଣାପାଣିଙ୍କର ଯୋଗ୍ୟସୁତା ସ୍ୱର୍ଗତା କୁନ୍ତଳା !
ସାହିତ୍ୟ-ଗଗନତଳେ ତୁମେ ଏକ ଦୀପ୍ତ ଧ୍ରୁବତାରା
ରମଣୀ-ସୁମନକୁଳେ ତୁମେ ସ୍ୱର୍ଗ ପାରିଜାତ-ଝରା ।
ତୁମ ଉଚ୍ଚ ଆଦରଶ ନାରୀପ୍ରାଣେ ଆଣିଛି ସ୍ପନ୍ଦନ
ବାଢ଼ିଛ ଭାରତୀ-ପଦେ ଯେଣୁ ଶତ କବିତା-ସୁମନ ।
ବିଧାତାର କ୍ରୁର ଶାପେ ହତଭାଗୀ ଏ ଉତ୍କଳମାତା
ଅକାଳେ ଯା ହରାଇଲା ତୁମ ଭଳି ଗୁଣବତୀ ସୁତା ।
ଦ୍ୱିତୀୟା କୁନ୍ତଳା କେବେ ଅବତୀର୍ଣ୍ଣା ହୋଇ ଏ ମରତେ
କରିବ ପୂରଣ ତବ ଶୂନ୍ୟସ୍ଥାନ ନାହିଁଟି ପରତେ ।
ଚିରଦିନ ପାଇଁ ଗଲ ମରଣର ଯବନିକା ପାରେ
ଆଉ କି ଏ ଦେଶଜନେ ଦେଖିବ ସେ ସ୍ମିତ ମୁଖ ବାରେ ?
ଉତ୍କଳେ ତୁମରି ପରି କେଉଁ ମାତା କରିବ ପ୍ରସବ
ଦ୍ୱିତୀୟା କୁନ୍ତଳାଟିଏ, କେବେ ଏହା ହେବ କି ସମ୍ଭବ ?
ବର୍ଷର ଅଶିତେ ତୁମେ ଆସିଥିଲେ ଦୀର୍ଘ ଆୟୁ ଲଭି
କାବ୍ୟଜଗତକୁ ନିଶ୍ଚେ ପୂର୍ଣ୍ଣ କରି ପାରିଥାନ୍ତ ଦେବୀ !
ଭାଗ୍ୟଦୋଷୁଁ ସେ ଆକାଂକ୍ଷା ମନେ ତବ ରହିଲା ଅପୂର୍ଣ୍ଣ
ଦରଫୁଟ କଢ଼ି ଆହା କୀଟଦଷ୍ଟ ହୋଇଲେ ଯେସନ ।
ପୁରେ ପୁରେ ଜନ୍ମିବାକୁ ତୁମ ପରି ବିଦୁଷୀ ଲଳନା
ସଞ୍ଜେ ଉତ୍କଳର ବଧୂ ବନ୍ଧୁପଦେ କରୁ ନିତ୍ୟ ଜଣା ।

ତେବେ ବା ସେ କୃପା କରି ଶୁଣି ନାରୀ କରୁଣ ଆକୁତ
ଦେବେ ଏ ଉତ୍କଳଧାତେ ତୁମ ପରି ନାରୀ ବିଦ୍ୟାବତୀ ।
ପୁନରପି ଏ ମାଟିରେ ଜନ୍ମ ଦେନ ହେ ଦେବୀ କୁନ୍ତଳା !
ଉଠିବ କି ବାଣୀ-ବକ୍ଷେ ଗୁନ୍ଥି କାବ୍ୟ-କୁସୁମର ମାଳ ?
ସାରଦାଚରଣେ 'ଚମ୍ପା' 'ଶତଦଳେ' ବାଢ଼ିବ "ଅଞ୍ଜଳି"
ଭାବ-'ଦୂର୍ବା' ଭାଷା-'ବିଲେ' ସଜାଇ ଗୋ 'ଅରଚନା'ଥାଳି
ଜୋଛନା ତଳରେ ବସି ହୃଦୟର ଗୋପନ "ଉଚ୍ଛ୍ୱାସ"
କ୍ଷୁଦ୍ର 'ଶେଫାଳିକା' କାନେ ଥିରିଥିରି କରିବ ପ୍ରକାଶ ।
"କାଳୀବୋହୂ" ନାମ ଶୁଣି ଭ୍ରୂ କୁଞ୍ଚନ କରେ ଯେଉଁ ଜାତି
ତାହାଠାରେ ଦେଖାଇଛ ସୁରଲୋକ ଦେବୀର ଶକତି ।
ପତିହୀନା ବିରହିଣୀ ବୁକୁ କେନ୍ଦ୍ରେ କରେ ହାଇହାଇ
ନିର୍ମମ ସମାଜ ଆଖି ଖୋଲି ତୁମେ ଦେଇଛ ଦେଖାଇ ।
ତାମସ-ଗହ୍ୱରୁ ତୁମେ ରମଣୀକୁ କାଢ଼ି ଆଣି ବଳେ
ଧରାଇ ଦେଇଛ ଦେବୀ ! ଜୟ-ଭେରୀ ତାର ବେନି କରେ ।
ଶତମୁଖେ କହୁଅଛି ସମାଜରେ କରି ତାର ଠେକ
"ନାରୀ ଶକ୍ତି, ନାରୀ ଦେବୀ—ବିଳାସର ନୁହେଁ କ୍ରୀଡ଼ନକ ।"
ଯାଇଛ ସାହିତ୍ୟ-କୁଞ୍ଜେ ଫୁଟାଇ ଯେ ଶୁଭ୍ର ପାରିଜାତ
ଦେବତାର ଶୁଭ୍ରଶିରେ ରହୁ ତାହା ଚିର ବିକଶିତ ।
ତବ ସ୍ତୁତି ଗାଇବାକୁ କ୍ଷମ କି ମୋ ଦୀନ କଲପନା
ତୁମ ଯଶେ ଗଉରବ କରେ ଆଜି ଉତ୍କଳଲଲନା ।
ଉଜ୍ଜ୍ୱଳ ଆଦର୍ଶେ ତବ ଅନ୍ଧକାର ହେଉ ଦୂରୀଭୂତ
ତୁମରି ମହତ୍ତ୍ୱ ଗୀତି ଗାଇ ନାଚଉ ନିଖିଳ ଚିତ୍ତ ।

# କବିବର ଚିନ୍ତାମଣି

କି ଶୁଭ ମୁହୂର୍ତ୍ତେ ଜନ୍ମ ଲଭି ଚିନ୍ତାମଣି !
ହସ୍ତେ ଧରି ରସମୟୀ ବିଳାସୁ ଲେଖନୀ
ରମନ୍ତି ସାରଦା-ବକ୍ଷ କବିତା-ସୁମନେ
କାଳବଳେ ଗଲ ଚାଲି ଅମର ଭୁବନେ ।

ନୀରବ ସଂଗ୍ରାମ ନିତ୍ୟ ଉଚ୍ଚ ବ୍ୟାଧିସାଥେ
ଥାପିଗଲ ମହାକୀର୍ତ୍ତି ଉତ୍କଳ ଜଗତେ ।
ଦୃଷ୍ଟାନ୍ତ ତୁମର କବି ଏ ଦେଶ ମାଟିରେ
ହେବନି ସମ୍ଭବ କେବେ ଦ୍ୱିତୀୟ କାଠାରେ ।

ସୁମଧୁର ତବ କାବ୍ୟ-ପୀୟୂଷମାଧୁରୀ
ପିଅନ୍ତି ଯା ସୁଧୀକୁଳ ପଞ୍ଚାମୃତ ସରି ।
ବିନା ଅଭ୍ୟାସରେ ଯେଉଁ ଲେଖନୀରୁ ତବ
ଝରନ୍ତି ଅମର ଗାଥା ଚିର ଅଭିନବ ।

ଅଗାଧ ସାଧନା ଆଉ ଏକାଗ୍ରତା ବଳେ
ତୁମରି ଦୃଷ୍ଟାନ୍ତ ତୁମେ କୋବିଦମଣ୍ଡଳେ ।
ଧନ୍ୟ ତବ କଳ୍ପନାର ସୁରଙ୍ଗ ତୂଳିକା
ଅଙ୍କିଦେଲ ସାହିତ୍ୟେ ଯା ଅନବଦ୍ୟ ରେଖା ।

ସୁକଠୋର ସାଧନାର ଜ୍ୱଳନ୍ତ ଆଦର୍ଶ
ତୁମଠାରେ ଏକା କବି ହୋଇଅଛି ଦୃଶ୍ୟ;
ବହୁ ଶ୍ରମ ଫଳେ ଯେଣୁ ହେ ବାଣୀସେବକ
ନିର୍ମିଣିଛ ସାହିତ୍ୟର ତୁଙ୍ଗ କୋଣାରକ ।

ଯାଇଅଛି ତୁମ ଯୋଗୁ ଭାରତୀ-ଦୀନତା
ଅପସରେ ଅନ୍ଧକାର ଉଷା କରେ ଯଥା ।
ସ୍ଫଟିକ ସମାନ ତବ କଳ୍ପନାର କାଚ
ଅଟେବୋଲି ନେଇଛି ଦେହେ ପୁରାଣର ଛାଞ୍ଚ ।

ଅତୀତର ବିମୋହନ ଆଖ୍ୟାନମାଳିକା
ତବ ବଳେ ନବଭାବେ ଦିଏ ଆଜି ଦେଖା ।
କେଉଁ ରାଜାଙ୍କରୁ ଭାବରାଶି ତୋଳିଆଣି
ଗାଇଗଲ ଉତ୍କଳର ଗୌରବ କାହାଣୀ ।

ତୁମେ କବି ମିଶି ନାହିଁ ମାଟି ଶମଶାନେ
ଲେଲିହାନ ଚିତା-ବହ୍ନିରେ ଭସ୍ମ ନୁହ ତୁମେ ।
ଯାବତ ଏ ବିଶ୍ୱେ ଥିବେ ଚନ୍ଦ୍ରମା-ତପନ
ତାବତ ଭାସ୍ୱର ଥିବ ତବ ମହାଦାନ ।

## ବାଚସ୍ପତ ଗୋପାଳଚନ୍ଦ୍ର

କଠୋର ସାଧକ ଗୁଣିରତନ,
କି ଶୁଭ ମୁହୂର୍ତ୍ତେ ଲଭି ଜନମ
ଅବିରତ ବୁଡ଼ି ଭାଷା-ଅର୍ଣ୍ଣବେ
ରଖିଗଲ ଯେଉଁ କୀରତ ଭବେ
ବିଶ୍ୱ ସେ 'ଭାଷାକୋଷ'
ଅନଶ୍ୱର ତୁଙ୍ଗ ଜ୍ଞାନ-ହିମାଚଳ
ଯା ଲଗି ଧନ୍ୟ ଏ ଦେଶ ।

ଧନ୍ୟ ହେ ଅଚିନ୍ତ୍ୟ କଳ୍ପନା ତବ
ସଜିଲ ଯା ବାଣୀ ବର ବିଭବ
ଜ୍ଞାନର ଆକାର ରଚିଲ ତୁମେ
ପୁରାଣପ୍ରସିଦ୍ଧ ଉତ୍କଳଭୂମେ
ତୁମ ଏକାଗ୍ରତା ସ୍ମର
ଭାରତୀ-ସେବକ ସାହିତ୍ୟସାଧକ
ସେ ପଦାଙ୍କ ଧର ।

ବାର୍ଦ୍ଧକ୍ୟ ଜୀବନେ ତାରୁଣ୍ୟ ରେଖା
ଦେଲ ଦେହେ ତବ ନୂତନ ଦେଖା
କଲ ଯେ ପ୍ରଗାଢ଼ ସାଧନା ତୁମେ
ଜରା ଜୀବନର ପଶ୍ଚିମ ଯାମେ
ଅନ କାଠାରେ ସମ୍ବନ୍ଧ
ସାହିତ୍ୟ-ଗଗନେ ଛବି ନାନା ବର୍ଣ୍ଣେ
ସୃଜିଲ ଯେ ନବ ନବ ।

ଦୀର୍ଘ ପଞ୍ଚବିଂଶ ବରଷ ଯାକ
ଲାଗି ଗଢ଼ିଲ ଯେ ଶବ୍ଦ-କୋଣାର୍କ
କୁହୁ ଦେଖି ତାହା ସାହିତ୍ୟ-ରଥୀ
ଶିର ପାତ ନିତ ଡାଲିବେ ନିତ
ଚିନ୍ତ୍ର ତୁମ କଲପନା
ଅସୀମ ଧଇର୍ଯ୍ୟ ତେଜ ବଳ ବୀର୍ଯ୍ୟ
ପୁଣି ଜ୍ଞାନ-ଆରାଧନା ।

ଅହେ କର୍ମଯୋଗୀ ଯୁଗବନ୍ଦନ
ସାହିତ୍ୟ-ବନ୍ୟାର ନବ ପ୍ଲାବନ
ଖେଳିଲା ଗୌରବେ ତୁମର ବରେ
ଅସଂଖ୍ୟ ତରୁଣ ତୁମରି କରେ
ଲଭିଲେ ଉତ୍ସାହ-ଦୀପ୍ତି
ଅହେ 'ଭାଷାକୋଷ- ଆଶ୍ରମ'-ତାପସ
ଭାଙ୍ଗିଛ ଜାତୀୟ ସୁପ୍ତି ।

'ଭାଷାକୋଷ' ସେ ତ ସ୍ମାରକ କୋଷ
ଉଜଳିଲା ଯାହା ଦେଶ ବିଦେଶ
ବିରାଟ ସୁଗ୍ରନ୍ଥ ଶବଦ-ଭାଣ୍ଡ
ତାରି ମଧ୍ୟେ ବଙ୍କ ହେ ପ୍ରହବାଜ
ବଞ୍ଚିଅଛ ଚିରଦିନ
ନର ଦେହ ଧରି କେହି ତୁମ ସରି
ଦେଇ ଯାଇ ନାହିଁ ଜ୍ଞାନ ।

ଗୁଣିଗଣାଗ୍ରଣୀ ହେ ବିଜ୍ଞବର
ହୋଇଲେହେଁ ମର ପିଣ୍ଡୁ ଅନ୍ତର
ଭୁଲି କି ପାରିବ ଉତ୍କଳମହୀ
ଯାଇଛ ଯେ ଜ୍ଞାନ-ଦୀପ ଜଳାଇ
ସାହିତ୍ୟର ସିଂହଦ୍ୱାରେ
ପ୍ରାଣେ ପ୍ରାଣେ ତାର ବିମଳ ଆଲୋକ
ଖେଳୁ ଥିବ ପକ୍ଷୀପୁରେ ।

## ଜ୍ୟୋତିର୍ବିଦ୍ ଚନ୍ଦ୍ରଶେଖର

ଯା ସୁଷମା ଖେଳେ          ତରୁ ଲତା କୋଳେ
ସୁଶ୍ୟାମଳ ଶସ୍ୟ କେଦାରେ,
ଯା ମହିମା ଫୁଟେ          ସ୍ୱଦେଶେ ବିଦେଶେ
କାରୁକଳାଯୁତ ମନ୍ଦିରେ
ଯା ଅଙ୍କେ ଜନମି ଶତ ଶତ କବି
ଭାରତୀ ମନ୍ଦିରେ ରଚିଗଲେ ଛବି
ମଣ୍ଡି ତାର କୋଳ          ହେ ଚନ୍ଦ୍ରଶେଖର
ମିଶିଲ ତାହାର ଦେହରେ ।

ରତ୍ନଖଚିତ          ସିଂହାସନ ତେଜି
ଭାରତ-'ଦ୍ୱିତୀୟ ତପନ'
ବାଉଁଶ ନଳରେ          ଦେଖିଲ ନିରତେ
ତାର୍-ରାଇଜର ସପନ
ଧରାତଳେ ରଖିଗଲ ଯେ କୀରତି
ତା ନିକଟେ ତୁଚ୍ଛ କସୀଠ ବିଭୂତି
ଦେଶବାସୀ ହାତେ          ଦେଲ ତବ ଯେଉଁ
ଅମୂଲ୍ୟ "ସିଦ୍ଧାନ୍ତ ଦର୍ପଣ" ।

ଧନ୍ୟ ଉତ୍କଳର    ଅସ୍ତମିତ ରବି
ଧନ୍ୟ ହେ ତୁମର ଜନମ
ଚିରଦିନ ପାଇଁ    କରିଗଲ ଅମର
ମହିମିତ ତବ କରମ
ଦେଶେ ଦେଶେ ବାଜି ତବ ପୁଣ୍ୟ କୀର୍ତ୍ତି
ପ୍ରକାଶିଲ ଦିନୁ ଦିନ ଦିବ୍ୟଜ୍ୟୋତି
ଧନ୍ୟ ମା ଉତ୍କଳ    ତୁମ ପରି ସୁତେ
କୋଳ କରି ତାର ମଣ୍ଡନ ।
ଯଶ-ଅଭିଳାଷୀ    ନ ଥିଲେହେଁ ଋଷି
ମହତ ଆଦର୍ଶ ତୁମର
ସଙ୍ଗେ ଆଣିଥିବା    ଅଦ୍ଭୁତ ପ୍ରତିଭା
କରିଛି ଜୀବନେ ଅମର
ପଙ୍କ କୋଳେ ଗୃହୁପଙ୍କଜ ପରିଯେ
ଉତ୍କଳ ଭୂଖଣ୍ଡେ ଜନ୍ମ ତବଯେ
କରିଲ ଯା ତୁମେ    ଅଜ୍ଞାନାନ୍ଧକାରେ
ଜ୍ଞାନର ଆଲୋକ ପ୍ରଚାର ।
ଚିର ଦାରିଦ୍ର୍ୟର    କଷାଘାତୁଁ ତୁମେ
ଲଭି ତ ନ ଥିଲ ମୁକତି
ସାରା ନିଶି ବସି    ଯୋଗାସନେ ଋଷି
କ୍ଷୟ କରି ଦେହ ଶକତି
"କରମ ସାଧନ—ଶରୀର ପାତନ"
ଏହି ମୂଳମନ୍ତ୍ର ଜପି ନିଶିଦିନ
ରଖିଗଲ ତୁମେ    କୋହିନୁର ସମ
ସ୍ୱଦେଶେ ଅକ୍ଷୟ କୀରତି ।

ପରଶ ପଥରେ                ତୃଷ୍ଟେହୁଏ ଖଟେର
କାନ୍ତିଟି ଯେସନ ହେମର
'ଯୋର୍ଗେଗଣ'ଙ୍କ ପାଇଁ                ଏ ନିଖିଳ ମଣ୍ଡୀ
ବୁଝିଲା ମହତ୍ତ୍ୱ ତୁମର
ମାଜିଲା ତୁମର ପ୍ରଗାଢ଼ ସାଧନା
ଦୂର ଗୋଲୋକର ଜ୍ୟୋତିଷ୍କ ଗଣନା
ତୁମ କୃତି-ରତ୍ନ                ଗୁନ୍ଥା ଶରଦନ
ସ୍ମୃତି-ସୂତ୍ରେ କାଳ-ଦାମର ।

କେଉଁ ଦୂର ଦେଶେ                ଗଲ ଚାଲି ଅହା
ଭାସ୍ୱର ଜ୍ୟୋତିଷ-ଭାସ୍କର
ସ୍ୱଦେଶ ଗୌରବ                ଉତ୍କଳକଣ୍ଠ
ସାଧନା-ସରସୀ-ପୁଷ୍କର
କିଏ ଜାଣେ କେବେ ବିଭୁ କୃପା ଫଳେ
ଦେହ ଧରି ପୁଣି ଏ ଦୀନ ଉତ୍କଳେ
ଆସିବ ହେ ଦେବ                ସ୍ୱପ୍ନ ସତ୍ୟ ହେବ
ହେ ମନୀଷୀ ଚନ୍ଦ୍ରଶେଖର !

## କର୍ମବୀର ଗୌରୀଶଙ୍କର

କି ମାହେନ୍ଦ୍ର ଯୋଗେ ଜନ୍ମି ହେ ଗୌରୀଶଙ୍କର
ଅରଜିଲ ନର ଦେହେ କୀରତି ଅମର ।
ଆଲୋକ-ବର୍ତ୍ତିକା ଧରି ଅନ୍ଧାରୀ ଉତ୍କଳେ
ଦେଖାଇଲ କର୍ମ-ପଥ ଭାବୀ ବଂଶଧରେ ।

କର୍ମ ସଙ୍ଗେ ରଚି ନିତ୍ୟ ନୀରବ ସଂଗ୍ରାମ
ସାର୍ଥକ କରିଛ ତୁମ କର୍ମବୀର ନାମ ।
ସାହିତ୍ୟ-ସାଗରେ ତୁମେ ଭାଷା-ନଉକାର
ପ୍ରତ୍ୟକ୍ଷରେ ଥିଲ ଏକ ବଳି କର୍ଣ୍ଣଧାର ।

ହେ ବରେଣ୍ୟ ସାମ୍ବାଦିକ ଗଉରୀଶଙ୍କର
ଦେଶ ଆଉ ବିଦେଶର ନାନା ସମାଚାର
'ଦୀପିକା' ସମ୍ବାଦପତ୍ର କରି ସମ୍ପାଦନ
କରିଛ ଉଜ୍ଜ୍ୱଳ ଜ୍ଞାନାଲୋକ ବିକିରଣ ।

କଣ୍ଠାଗତପ୍ରାଣା ଦୀନା ଓଡ଼ିଆ ଭାଷାର
ଥିଲଟି ହେ ତୁମେ ଧନ୍ୱନ୍ତରୀ ଉପକାର ।
ସ୍ୱଦେଶେ ଆଜି ହେ ସେହି ସୁକୃତିର ଫଳେ
ସ୍ମରନ୍ତି ତୁମକୁ ବିଜ୍ଞ ଦାୟାଦସକଳେ ।

ନିସର୍ଗ-ସୌନ୍ଦର୍ଯ୍ୟ-ସ୍ଥାନ ନଟେଶ୍ୱ-ଉରସେ
ହସୁଛି ଯେ ଉପବନ *ହରଷ ରଙ୍ଗରେ
ଅର୍ପି ବକୁଳ ମୋଦ ସଞ୍ଜ ସମୀରଣେ
ତା ମଧ୍ୟେ ଭ୍ରମର ସ୍ମୃତି ଜାଗେ ଅଳି ମନେ ।

ବହୁଗୁଣଧୀର ସନ୍ନ୍ୟାସୀ ସମାନ
ଯାପି ଆଡ଼ମ୍ବରହୀନ ସରଳ ଜୀବନ
ଦେଇଛ ତୁମେ ନିଜ ସାଧୁ ଚରିତର
ମହତ ଦୃଷ୍ଟାନ୍ତ ଅହେ ଯୋଗଜନ୍ମା ବୀର !

ଅମର ସମ୍ପଦ ଯାହା ଯାଇଅଛ ରଖି
ଉତ୍କଳଭୁବନେ, ନିତ୍ୟ ତାହାରେ ନିରେଖି
ପ୍ରଣମି ଉଦ୍ଦେଶ୍ୟେ ତବ ଏ ଓଡ଼ିଆ ସୁତେ
ବାହୁଡ଼େ ସ୍ୱଦେଶ-ତତ୍ତ୍ୱ ଦୂର ଲକ୍ଷ୍ୟପଥେ ।

* କଟକର 'ଗୋସ୍ୱାଶଙ୍କର ପାର୍କ'

# ନାଟ୍ୟକାର ରାମଶଙ୍କର

ଅଶ୍ରୁ-ଭରାମନେ ସ୍ମୃତି—
 ଯବନିକା ଟାଣି ଦେଇ ଚାଲି
ଯାଇଅଛ ସାହିତ୍ୟର
 ଅଙ୍କେ ଦେଇଛ ମଧୁସ୍ମୃତି ଛବି ।
ଥିଲ ତୁମେ କର୍ମପ୍ରାଣ
 ଉତ୍କଳର ସ୍ୱରାଜ-ଅଙ୍ଗନେ
ଦେଇଥିଲ ଜୀବନ
 ମାତୃମନ୍ତ୍ରେ ଦୀକ୍ଷା ଯୋଗାସନେ ।
ଅଦ୍ୟ ଲେଖି ଉପନ୍ୟାସ
 ଭରିଅଛ ବାଣୀ-ଭଣ୍ଡାରର
ତୁମେହିଁ ଜନକ ପୁଣି
 ଓଡ଼ିଆରେ ନାଟ୍ୟ ସାହିତ୍ୟର ।
ସମସ୍ତଙ୍କୁ ଜୀବନରେ
 ଦେଇ ନିଜ ପ୍ରାଣଠାରୁ ପ୍ରିୟ
ଅଗାଧ ସାଧନା ବଳେ
 ପାଇଅଛ ଲେଖି ଅମରତ୍ୱ ।
ନମନୀୟ ନାଟ୍ୟକଳା
 ବଞ୍ଚିଥିବ ଯାବତ ଏ ଭୂମେ
ନମସ୍ୟ ରହିବ ଦେବ ।
 ଏ ଜାତିର ମହାମଣି ତୁମେ ।

# ଦେବାତ୍ମା ପ୍ୟାରୀମୋହନ

ନିକୃଷ୍ଟ ଶୁକ୍ତି-ଗରଭେ
　　　　ବହୁମୂଲ୍ୟ ମୁକୁତାର ସମ
ଦରିଦ୍ର କୁଟୀର କୋଣେ
　　　　ହେ ପୁଣ୍ୟାତ୍ମା ତୁମର ଜନମ ।
ରୋଗୀରେ ଦେଇଛ ପଥ୍ୟ
　　　　ବିପନ୍ନର ଶୁଣିଛ ଗୁହାରି
ଫେରିନି ବିଫଳେ କେବେ
　　　　ତବ ପ୍ରାଣୁ ଡାକଟି କାହାରି !
ଅନିତ୍ୟ ଜୀବନ ଭବେ,
　　　　କାଳ-ସ୍ରୋତେ ଯାଏ ଦିନ ଭାସି
କାନ୍ଦଇ ଉତ୍କଳ କିନ୍ତୁ
　　　　ଗୁଣ ତବ ସ୍ମରି ଦିବାନିଶି ।
ଯେ ପ୍ରତିଭା ଘେନି ତୁମେ
　　　　ଜନ୍ମିଥିଲ ଦରିଦ୍ର ଉତ୍କଳେ
ତା ଯୋଗେ ମୃତ୍ୟୁକୁ ତୁମେ
　　　　ଜିଣିଲ ଏ ଧରଣୀର ତଳେ ।
ଲେଖିଗଲ "ଓଡ଼ିଶାର
　　　　ଇତିହାସ" ଧରି ଯେଉଁ ତୂଳୀ
କ୍ୱଠାଏ ଅଜ୍ଞ ତାହା
　　　　ଅତୀତର ଜାତୀୟ ଗୁରୁସୀ ।

ଅଦମ୍ୟ ପ୍ରଚେଷ୍ଟା ଫଳେ
ଥାପିଗଲ ଶିକ୍ଷା-ଅନୁଷ୍ଠାନ
ଅଗଣିତ ଅନ୍ତେବାସି—
କଣ୍ଠେ ଆଜି ଉଠେ ତବ ଗାନ ।
ଦରିଦ୍ର ସନ୍ତାନ ହୋଇ
ସ୍ୱଦେଶେ ଯା କରିଗଲ ଦାନ
ଲଜ୍ଜିତ ହୁଅଇ ତହିଁ
ନୃପତିର କରୀଟ-ସମ୍ମାନ ।
ମୁକୁଟ ନୁଆଏ ମଥା
ଚିରଦିନ କାରତର ପଦେ
ତୁମ କୃତ ମୂର୍ତ୍ତି ଆଜି
ଉତ୍କଳର ଭାଗ୍ୟ ସମ୍ପଦେ ।

## ଆଦର୍ଶରାଜା ସୁଢ଼ଳଦେବ

ବାମଣ୍ଡାର ଅଧିପତି ହେ ସୁଢଳଦେବ
ଧନ୍ୟ ହେଲ ତୁମ ଯୋଗେ ରାଜସିଂହାସନ
ଭରିଥିଲେ ଲକ୍ଷ୍ମୀ ତବ ଭଣ୍ଡାରେ ବଉବ
ବାଣୀଙ୍କର ଥିଲ ପୁଣି ସୁଯୋଗ୍ୟ ସନ୍ତାନ ।

ଧନ୍ୟ କବି ଶୁଭ ଜନ୍ମ ତବ ରାଜକୁଳେ
ଯୁଗ୍ମଦେବୀପଦ ତୁମେ କର ଆରାଧନ
ପ୍ର ସୂର୍ଯ୍ୟ ସମ ରାଜ ଉତ୍କଳ-ଅମ୍ବରେ
ଫୁଟାଇଲ କବିକୁଳ-ମାନସ-ନଳିନ ।

ଏକେତ କନକଲତା ସ୍ୱଭାବେ ସୁନ୍ଦର
ହୁଙ୍କେ ଶୋଭେ ହୀରପୁଷ୍ପେ ଯଥା ଶତଗୁଣା
ତେସନ କଣ୍ଠ ପାଶେ ଶୋଭେ ମନୋହର
ହେ ରଞ୍ଜନ କରଧୃତ ବାଣୀ ସ୍ୱର୍ଣ୍ଣବୀଣା ।

ହେ କବି, ନିଜର ମହା ଆଦରଣାଲୋକେ
କରି ରାଜପୁରୀ କବିପୁରେ ପରିଣତ
ଅର୍ଥିକ ସାହାଯ୍ୟ ଦାନେ ଭାରତୀସେବକେ
ବହୁଗୁଣେ ସଂଖ୍ୟା ତାଙ୍କ କଲ ବିବର୍ଦ୍ଧିତ ।

ଶୁଭଫଳେ 'ଦପୁଁ କାନ୍ତ ଦୀପଶିଖା' ସମ
ସୁଯୋଗ୍ୟ ସନ୍ତାନ ତବ ଶ୍ରୀ ସଚ୍ଚିଦାନନ୍ଦ
ପବିତ୍ର ପଦାଙ୍କ ଯତ୍ନେ ଅନୁସରି ତୁମ
ରହିଲେ ତୁମରି ସଙ୍ଗେ ହୋଇ ଚିରବନ୍ଦ୍ୟ ।

ସାହିତ୍ୟାନୁରାଗ ତବ ଶୁଣି ବନ୍ଧୁ ଦୂରୁ
'ଦ୍ୱିତୀୟ ବିକ୍ରମାଦିତ୍ୟ' ଭାବି ହେ ତୁମରେ
ନିରାଶେ ବାହୁଡ଼ି କେହୁ ନ ଥିଲେ ସେ ପୁରୁ
ଯେବେଳେ ଯେପାଇଁ ପ୍ରାର୍ଥୀ ଥିଲେ ତୁମଠାରେ ।

ସ୍ୱଦେଶହିତୈଷୀ ତୁମେ ଗୁଣୀଙ୍କ ରଞ୍ଜନ
କୋଟି ପ୍ରାଣେ ସ୍ମୃତି ରଖି କରିଛ ପ୍ରୟାଣ ।

## କବି ବଳଭଦ୍ର

ସାରଦା-ମନ୍ଦିର ଅଳଙ୍କୃତ କରି
କବିତା-କୁସୁମ-ଭରେ ।
ଗଢ଼ିଅଛ କବି ହେ ବଡ଼କୁମାର !
ସାହିତ୍ୟର ଗଡ଼ଦ୍ୱାରେ ।

ଯେଉଁ ସୁଦୁର୍ଲ୍ଲଭ ଅପୂର୍ବ ବିଭବ
ରଖିଗଲ କବିମଣି
କାଳ କାଳ ପାଇଁ ଏ ଜାତି ଗରବ
କରିବ ତାହାକୁ ଘେନି ।

ରାଜଭୋଗସ୍ପୃହା ତେଜି ସୁଧୀବର
କଳପନା-କୁଞ୍ଜ ତଳେ
କବିତା-ସଘନେ ରହିଲ ବହିଲ
ଭାରତୀ-କରୁଣାବଳେ ।

ଏହି ଦେଶେ ଜନ୍ମି କେତେ ଧନୀ ମାନୀ
ଗଲେଣି ତ କାଳବଳେ
ଏ ଜାତିର ସ୍ମୃତି— ଫଳକେ ତାହାର
ଲେଖା ନାହିଁ ନାମ ତଳେ ।

କିନ୍ତୁ ତୁମ ଦାନ କାବ୍ୟ-ପୁଷ୍ପଦାମ
ସାରଦା-ଉରସେ ଲମ୍ବି
କାଳ କାଳକୁ ତ ରଖିଥିବ ନାମ
'ବଳଭଦ୍ର ରାଜକବି' ।

ଯେ ରଥେ ବସିଲେ        କବି 'ଦୀନକୃଷ୍ଣ'
'ଅଭିମନ୍ୟୁ' ଉପଇନ୍ଦ୍ର'
ସେହି ରଥେ ବସି        ଅମର ଭୁବନେ
ଯାଇଛ ହେ 'ବଲଭଦ୍ର' !

ଲେଖନୀ ମୁନରେ        ନାହିଁ ପାଏ ଭାଷା
ବର୍ଣ୍ଣିବାକୁ ତବ ଗୁଣ
ଅଲୋକ ଭ୍ରମର        ସାହିତ୍ୟ ଗଗନେ
ନିରତେ ଦେଦୀପ୍ୟମାନ ।

## ମହାରାଜ ଶ୍ରୀରାମଚନ୍ଦ୍ର

ରବିବଂଶମଣି ଦ୍ୱିତୀୟ ଶ୍ରୀରାମ
ଉଇଁ ବୁଡ଼ିଅଛ ସ୍ୱର୍ଣ୍ଣଭାନୁ ସମ ।
ନବଯୁଗାଲୋକସଞ୍ଚାରକ ରାୟ,
ପ୍ରଜାପାଳନେ ନିବେଶି ହୃଦୟ
ଦେଶ ଦଶ ହିତେ ହୋଇ ଦୃଢ଼
ସାର୍ଥକ କରିଛ ତବ ରାଜଛତ୍ର ।
ହୋଇ ତୁମେ ଲକ୍ଷ ବିଳାସ ଅଧୀଶ
ବିଳାସରେ କରିଥିଲ ନିଜ ଦାସ ।

ନୃପଶିରୋମଣି ପରଦ୍ଧାରଙ୍କ
ରଖିଥିଲ ତୁମେ ରାମରାଜ୍ୟ ଟେକ ।
ଚେତାଏ ଆଜି ତା ଉତ୍କଳ-ପରାଣେ
ଥିବେ      । ତୁମେ ଅମର ଭୁବନେ ।
ମାନ ନାହିଁ ଆଶା ତୁମସର ଜଣେ
ଜନମି ଏ ଖଣ୍ଡ ଉତ୍କଳଭୁବନେ
କରିବ ଜନମଭୂମି ପବନିତ
ଦେଖାଇ ସଙ୍କଳେ ପ୍ରଗତିର ପଥ ।

କି ଅଦ୍ଭୁତ ଭବେ କାଳର ରହସ୍ୟ
ଆଭାସେ ଯା ତୁମ ମୃତ୍ୟୁ ଇତିହାସ ।
କାହାଣୀ ପରି ଯା ପ୍ରତେ ହୁଏ ମନେ
ସତ୍ୟ ହେଲା ସେ ତ ତୁମର ଜୀବନେ ।
ମରଣ ପୂରୁବୁଁ ହେ ମନୀଷିବର
ଦୁର୍ଲଭ ତୁମର ମହତପ୍ରାଣର
ଦେଇଗଲ ଯେଉଁ ଜ୍ୱଳନ୍ତ ଆଭାସ
ରାଜକୁଳେ ତାହା ମହା ଆଦରଶ
ଦେଶବାସୀ ପକ୍ଷେ ତଥା ନବଶିକ୍ଷା
ବରେଣ୍ୟ ହେ ଦେଶ ଜନନୀର ଟୀକା !

ରାଜକୁଳେ ତୁମେ ଯୋଗ୍ୟ ଅବତଂସ
ଅଜ୍ଞାନ-ତିମିର କରିଅଛ ଧ୍ୱଂସ ।
କାଳବଶେ ତେଜି ଅକାଳେ ଶରୀର
ଯଶୋଦେହେ ତୁମେ ରହିଛ ଅମର ।

# ସାମ୍ବାଦିକ ନୀଳମଣି

ସ୍ୱଦେଶପ୍ରେମିକ ସାହିତ୍ୟରସିକ
ଅଟେ ନୀଳମଣି ବିଦ୍ୟାରତନ !
ସୁବିମଳ ଯଶ ରହିଥିବ ତବ
ଥିବେଟି ଯାବତ ତାରା ତପନ ।
ତାପସ ଧରମ ବୀରର କରମ
ଦେଖାଇଯାଇଛ ସାଧନାବଳେ
ଯୁଗେ ଯୁଗେ ତୁମେ ପାଉଥିବ ପୂଜା
ଉତ୍କଳ ଭବିଷ୍ୟ ସୁତମଣ୍ଡଳେ ।
ଧନ୍ୱନ୍ତରୀ ସମ ରୋଗୀଙ୍କ ସେବାରେ
ଢାଳି ଦେଉଥିଲ ପରାଣ ମତି
ଲୋଭ ଅହଙ୍କାର ହୃଦଠାରୁ ତବ
କରିଥିଲେ ବହୁ ଦୂରେ ବସତି ।
ସ୍ରୋତସ୍ୱିନୀ-ସ୍ରୋତ ସମ ମହାମନା
କର୍ମେ ରତ ଥିଲ ଆନନ୍ଦେ ଭାସି
ମହର୍ଷି ସମାନ ଯାପୁଥିଲ ଦିନ
ସାହିତ୍ୟସେବାରେ ମନ ନିବେଶି ।
ସ୍ୱଦେଶପ୍ରେମର ଧରମ ଆଚରି
ସମାଜସଂସ୍କାରେ ଢାଳିଲ ମତି
ତବ ଜ୍ଞାନ-ଦୀପ "ଉତ୍କଳ-ମଧୁପ"
ସୌରଭେ ଭରିଲା ଏ ଦେଶ କ୍ଷିତି ।

ସଂପାଦକ, ବକ୍ତା— ରୂପେ ଇତିହାସେ
ରହିଲ ହେ ତୁମେ ଚିର ନମସ୍ୟ
ଦୂରୁ ଥାଇ ଢାଳ ହେ ନିର୍ଭୀକ ବୀର
ଏ ଦେଶ-ଶିରସେ ଶୁଭ ଆଶିଷ ।
ମର ଦେହେ ତୁମେ ରହିଲ ଅମର
ଦେଶ ମାଟିତଳେ, ଜାତିର ପ୍ରାଣେ
ହେଉ ମୁଖରିତ ଖିଲ ଏ ଉତ୍କଳ
ତବ ମଧୁ ସ୍ମୃତି-ସଂଗୀତଗାନେ ।

## କାନ୍ତକବି ଗୋପାଳକୃଷ୍ଣ

ସ୍ୱର୍ଗର ଯେ ମଧୁ ବାନ୍ତ ମନ୍ଦାକିନୀ
ଏ ଦେଶ ବାଟେ
ଫେରାଇ ଗୋଧନ ଗାଏ ତା ଗୋପାଳ
ଗୋଧୂଳି ପଥେ ।
ସେ ଗୁଞ୍ଜ ସଙ୍ଗୀତ ମୋହନ ଆବେଶେ
ଉଠଇ ମାତି
ତରୁ ଲତା ଫୁଲ ତରୁଣ ପଲ୍ଲବ
କଅଁଳ ଗୁଚ୍ଛ ।
ଗରବର ଥାଳ ହେ ଗୋପାଳକୃଷ୍ଣ
ତୁମେ ଯେ ଧନ
ଅଭାଗୀ ଉତ୍କଳ-ଜନନୀର କୋଳ
କଲ ମଣ୍ଡନ—
କେତେ ସଉଭାଗ୍ୟେ ଭରିଲା ମାଆର
ବିପୁଳ ବୁକ
କହୁ କି ପାରିବ ସେ-ଦେଶେ ଥାଇ ହେ
ସେ ଧନ ସୁଖ ?
କୋଟିକେ ଗୋଟିଏ ମିଳିବା କଠିନ
ତୁମ ହୃଦୟ
ତୁମର ହୃଦୟ ସାଥେ ସିନା ତୁମେ
ହେଲ ବିଲୟ ।

ତୁମ ସ୍ୱର ଏକା ତୁମେହିଁ ହେ କବି
ସେ ପାଇଁ ସିନା
ହସାଇ ତୁମରେ ଉତ୍କଳ-ଭାରତୀ
ଏସନ ଦୀନା ।
ତରଳ ମଧୁର କାନ୍ତ ମନୋହର
ସରଳ ଗୀତ
ନିର୍ଝରଣୀ ସମ ନୃତ୍ୟଛନ୍ଦେ ତବ
କରନ୍ତି ଗତ ।
ଶୁଣିଲେ ସେ ବାଣୀ ଶିଶୁ ହୁଏ ଭୋଳ
ସୁସ୍ୱର ଛୁଟେ
ଅବସନ୍ନ ତାର ଅଳସ ପବନେ
ସପନ ଫୁଟେ ।
ସେ ବଇଁଶି ନାଦେ ତେଜଇ ତଳପ
ବିଳାସୀ ଜନ
ତରୁଣୀ ବରଜେ ମଦାଳସ ଗତ
ଦୁର୍ଜ୍ଜୟ ମାନ ।
ଏସନ ତୁମର ଗୀତ-ଗଉରବ
ଛନ୍ଦର ରସ
ଅଧୀର ପବନେ ଛୁଟାଏ ମନ୍ଦାର
ମଧୁର ରସ ।
ପାଇଛ ଯା ଦେଇ ଦୁନିଆ-ବଜାରେ
ଅମୂଲ ତାହା
ସେହୁ ଠେକ ଆଜି ଓଡ଼ିଆ ପୁଅର
ହୋଇଛି ସାହା ।

## ପ୍ରିୟଦର୍ଶୀ ବ୍ରଜସୁନ୍ଦର

ଅତୁଳ ସଂପଦକୋଡ଼େ
ଯଦି ଅବା ହୋଇଥିଲ ଜାତ
ବିଳାସ ବ୍ୟସନେ କିନ୍ତୁ
ମଜ୍ଜି ନାହିଁ ତବ ଧୀର ଚିତ୍ତ ।
ଲାଗିଥିଲା ପ୍ରାଣ ତବ
ଅନୁବ୍ରତେ ଭାରତୀ-ସେବାରେ
ତରୁଣ-ଭାବୁକ-ହୃଦେ
ନବ ନବ ପ୍ରେରଣା ଦେବାରେ ।
ମାନସେ ନ ରଖି ତିଳେ
ପାର୍ଥିବ ଏ ସଂପଦର ମୋହ
ବୁହାଇ ଦେଇଛ ଦେଶେ
ପ୍ରଗାଢ଼ର ସାରସ୍ୱତ-ସୁଅ ।
ଜାତିର ଉନ୍ନତି କେନ୍ଦ୍ରେ
ପ୍ରତିଫଳେ ସାହିତ୍ୟ-ଦର୍ପଣେ
ପ୍ରତ୍ୟକ୍ଷେ ତା ଦେଖାଇଲ
'ମୁକୁର'ର ଶୁଭ ସମ୍ପାଦନେ ।
ନବୀନ ଉତ୍ସାହେ ମାତି
ଫଳେ ତାର ଅସଂଖ୍ୟ ତରୁଣ
ନବ ଯୁଗେ ନବାଲୋକ
ସାରା ଦେଶେ କଲେ ବିକିରଣ

ପ୍ରିୟଭ୍ରାତେ ସର୍ବଜନେ
ସମଭାବେ ବତର ସେନେହ,
କରୁଥିଲ ପ୍ରୋତ୍ସାହିତ
ବାଣୀସେବା ପାଇଁ ଅହରହ ।
ପଞ୍ଚଶିଷ୍ୟ ରୂପେ ତୁମେ
ଅନୁସରି 'ମଧୁ' ମଧୁ ପଥ
ଉତ୍କଳ-ଏକୀକରଣେ
କରିଥିଲ ଜୀବନର ବ୍ରତ ।
ପୂର୍ଣ୍ଣାଙ୍ଗ-ଜନନୀ-ମୁଖ
ଦେଖିବାକୁ ବଳ୍ପ କଲ ଥାଲ
ନ ପୂରୁଣୁ ଆଶା ତବ
କାହୁଁ ଆସି ଟାଣିନେଲା କାଳ ।
ସ୍ୱର୍ଗେ ଥାଇ ହେ ଦେବ !
ବନ୍ଦନୀୟ 'ମଧୁ' ଗୁରୁ ସାଥେ
ଆଶୀର୍ବାଦ-ପୁଷ୍ପ ବୃଷ୍ଟି
କର ଏହି ଦେଶବାସି-ମାଥେ ।
ବୃହତ୍ତର ଉତ୍କଳର
ନର ନାରୀ, କୋଟି ସୁତ ସୁତା
ବନ୍ଦ ଦେଶମାତା-ପଦ
ସମକଣ୍ଠେ ଗାଇ ତବ ଗାଥା
ଯେସନ ତବ ଆଦରଶ
ଲାଗିଯାନ୍ତୁ ସ୍ୱଦେଶ-କରମେ
ତୁମର ଉଦ୍ଦେଶ୍ୟେ ଦେବ !
ଭକ୍ତିଭରେ ସୁ ଦୂରୁଁ ପ୍ରଣମେ ।

## ବାଣୀଭୂଷଣ ମୃତ୍ୟୁଞ୍ଜୟ

ସଂସ୍କୃତ ସାହିତ୍ୟ-ସିନ୍ଧୁ ନିରତ ମନ୍ଥନେ
ପାଇଲ ଯେ ବହୁମୂଲ୍ୟ ବିମଳ ରତନେ
ଗୁନ୍ଥି ତହିଁ ହାର ଦେଲ ବୀଣାପାଣି-ଗଳେ
ସ୍ୱାଭାବିକ ଜ୍ୟୋତି ତାର ନିତ୍ୟ ପ୍ରତିଫଳେ ।
ସେ ଜ୍ୟୋତି ସୂତ୍ରେ ଆଧୁନିକ ସୁଧୀଗଣେ
ପ୍ରାଚୀନ ସାହିତ୍ୟକୋଷ ଝଲସେ କେସନେ !
ତୁମେହିଁ ଖୋଲି ଦେ ତାର ସୁଦୃଢ଼ କବାଟ
ପ୍ରାଚୀନ ସାହିତ୍ୟ ରାଜ୍ୟ ଦେଖାଇଲ ବାଟ ।
ଚିରଋଣୀ ତବ ପାଶେ ଅନ୍ତେବାସୀଗଣ
ଶିଖାଇଛ ଯେଣୁ ତାଙ୍କୁ ବିଶୁଦ୍ଧ ଲିଖନ ।
ସ୍ମରନ୍ତି ତୁମକୁ ତେଣୁ ଆଜି ଶିଷ୍ୟକୁଳ
ସାହିତ୍ୟସାଗରେ ଯେତେ ଧରିଛନ୍ତି କୂଳ ।
ବିବିଧ ପୁସ୍ତିକାବଳୀ କରି ପ୍ରଣୟନ
ଶିକ୍ଷାରାଜ୍ୟେ ସମୋନ୍ନତି କରିଛ ସାଧନ ।
ଏ ଦେଶର ଦୁର୍ଭାଗ୍ୟକୁ ମାନି ନିଷ୍ଠୁରକାଳ
ସ୍ୱୀୟ ଆଶା-ସ୍ୱପ୍ନ ତୁମ କରିଲା ବିଫଳ ।
ଅକାଳେ ଯଦ୍ୱା ଭାଗ୍ୟ ହୋଇଅଛି ବାମ
ତଥାପି ସାର୍ଥକ ତୁମ ମୃତ୍ୟୁଞ୍ଜୟ ନାମ ।
ତିରୋଭାବ ଯେହେତୁ ତବ ହୁଅଇ ପ୍ରତୀତ
ଉତ୍କଳର ପକ୍ଷେ ଏକ ଅପୂରଣ କ୍ଷତି ।



ମୁଦ୍ରାକର—ଶ୍ରୀ ରାମେଶ୍ୱର ଦାସ ଚୌଧୁରୀ ରଣି ପ୍ରେସ, କଟକ-୧
୧୯୫୧

